# ଜହ୍ନର ରକ୍ତ ଧଳା

କାବ୍ୟକୃତି

ଲେଖକ : ଭାନୁଜୀ ରାଓ ■ ପ୍ରକାଶକ : **କାହାଣୀ**, କଲ୍ୟାଣୀନଗର, କଟକ-୧୩ ■ ଅକ୍ଷରସଜ୍ଜା : ତପସ୍ୱିନୀ, କଲ୍ୟାଣୀନଗର, କଟକ-୧୩ ■ ମୁଦ୍ରଣ : ଟେକ୍‌ନୋ ଆର୍ଟସ ଅଫ୍‌ସେଟ୍, କଲ୍ୟାଣୀନଗର, କଟକ-୧୩ ■ ମୂଲ୍ୟ : ଟ. ୫୦/-

ପ୍ରଥମ ପ୍ରକାଶ :
୧୯୯୮

# JANHARA RAKTA DHALA

Author : Bhanujee Rao ■ Publisher : **Kahani**, Kalyani Nagar, Cuttack-13 ■ Typesetting : Tapaswini, Kalyani Nagar, Cuttack-13 ■ Printed at : Techno Arts Offset, Kalyani Nagar, Cuttack-13 ■ Price : Rs.50/-.

First Edition
**1998**

ଉତ୍ସର୍ଗ

ପିତାମହ ଭକ୍ତକବି ମଧୁସୂଦନଙ୍କ ଉଦ୍ଦେଶ୍ୟେ –

# ସୂଚୀ

# ଝର୍କା

ବେଳେ ବେଳେ ଝର୍କା ଖୋଲିଯାଏ,
କିନ୍ତୁ ବ୍ୟବଧାନ ରଚେ ଲୁହାଛଡ଼ ।
ଝର୍କାର ଏପଟେ ବିରହ,
ଝର୍କାର ସେପଟେ ବିରହ ।
କେବଳ ତୁମର ଅସହାୟ
ନିରିମାଖି ଆଖି
ଅନାଇଥାଏ ନିଷ୍ପଲକ ।

ଆମର ଆଶ୍ଳେଷ ନାହିଁ,
ଆମର ଚୁମ୍ବନ ନାହିଁ,
ଆମର ଅସ୍ତିତ୍ୱ ନାହିଁ,
ଆକାଂକ୍ଷାର ଦୈହିକ କୌଶଳ
ବ୍ୟର୍ଥ ସବୁ ।

ଆମେ ପ୍ରତ୍ୟେକେ ସାନ ସାନ ଦ୍ୱୀପ,
ଆମକୁ ବେଷ୍ଟନ କରିଛି
ବାଧାର ସମୁଦ୍ର ।
ଯାହାକୁ ଅତିକ୍ରମ କରିବା
କଠିଣ ।

ତୁମ ଓଠରେ ଚୁମ୍ବନର ଦାଗ
ଲାଗି ନାହିଁ,
ସୀମାହୀନ ଲାଜରେ ରକ୍ତିମ ।
ସ୍ତନ ଦୁଇଟି ଫୁଲର
ମୁଦ୍ରିତ କୋରକ,
ମୋହମୟ ଅଥଚ କୋମଳ ।

ବେଳେ ବେଳେ ଝର୍କା
ଖୋଲିଯାଏ ସଶବ୍ଦରେ,
ଅନ୍ଧାରରେ ରାସ୍ତାକଡର
ବତିଖୁଣ୍ଟ ପରି
ମୁଁ କେବଳ ପ୍ରତୀକ୍ଷାରେ
ଥାଏ ଏକା ଏକା ।



# ଥୋଇବି କେଉଁଠି ?

ମୋ ପ୍ରେମକୁ ମୁଁ ଲୁଚାଇ ରଖିବି
ଅତି ଗୋପନରେ,
ପୃଥିବୀର କେହି ହେଲେ
ଟେର ପାଇବେନି ମୁଁ
ପ୍ରେମରେ ପଡ଼ିଛି ବୋଲି ।
ନଡିଆ ଗଛର ଅଗରେ
ଥୋଇ ଦେଇ ଆସିବି ପ୍ରେମକୁ,
କିନ୍ତୁ ଯଦି କାଉ ଖୁମ୍ପି
ଦିଏ ?

ନୋହିଲେ, ଗାଧୁଆ ତୁଠର ପିଚ୍ଛିଳ
ଶିଉଳି-ବୋଳା ପଥର ତଳେ
ଚପାଇ ଦେଇ ଆସିବି ତାକୁ,
ଏଠିବି, ଯଦି ମାଛ ଆସି
ଗିଳି' ଦିଏ ?

ମରୁଭୂମିର ବାଲି ତଳେ
ପୋତି ଦେଇ ଆସିବି ପ୍ରେମକୁ,
କିନ୍ତୁ ଡର ମାଡୁଛି, କାଳେ ତାକୁ
ଉଡ଼ାଇ ନେବ ଉନ୍ମାଦ ବାଲି-ଝଡ଼ ଆସି ?

ଗୋଦାମ- ଘରର ଅନ୍ଧାରି କୋଣରେ,
ବୁଢ଼ିଆଣୀ ଜାଲକୁ ଆଡ଼େଇ,
ପରିତ୍ୟକ୍ତ ଭଙ୍ଗା ଲଣ୍ଠନ, ଆଉ
ଗୋଡ଼-ହୀନ ଚୌକି-ଟେବୁଲ ମେଳରେ
ଲୁଚାଇ ଦେଇ ଆସିବି ପ୍ରେମକୁ,
କିନ୍ତୁ ସେଠି ଯଦି ଉଈ ଖାଇ ଯାଏ ?

ଖଟର ଗଦି ତଳେ
ପ୍ରେମକୁ ଚଉତି ବିନାସ୍ତ
କରି ରଖି ଦେଲେ,
କେହି ତାହା ପାଇବେନି, ଖୋଜି ଖୋଜି,
ହେଲେ ଛାରପୋକ କାମୁଡ଼ା
ପ୍ରେମ ସହି ପାରିବ ତ ?

ମୁଁ ଭାବୁଛି, ଅନ୍ୟ କିଛି ନ କରି
ହୃଦୟର ଗୋପନ ଫରୁଆ ଭିତରେ
ରଖି ଦେବି ପ୍ରେମକୁ ଅତି ସନ୍ତର୍ପଣରେ,
କେହି ହେଲେ ସୁରାକ ପାଇବେନି' ଏଥର ।



# ଝଡ଼ ଓ ମୁଁ

ମୁଁ ଏକ ଉନ୍ମୂଳିତ ତରୁ,
ମୋର ସବୁ ଚେର ଉପୁଡ଼ି
ଯାଇଛି ମାଟିରୁ ।
ମୁଁ ଘୋସାରି ହୋଇ ଯାଉଛି
କ୍ରମଶଃ ଗୋଟାଏ ଅପ୍ରତିରୋଧ
ଝଡ଼ର କେନ୍ଦ୍ରବିନ୍ଦୁ ଆଡ଼କୁ ।
ନିଜକୁ ସମର୍ପଣ କରିଛି
ମୁଁ ଝଡ଼ ହାତରେ,
ମୁଁ ଆଉ ନିଜ ଆୟତ୍ତରେ
ରଖି ପାରୁ ନାହିଁ ନିଜକୁ ।
ମୋତେ ଝଡ଼ ନେଇ ଯାଉଛି
ଉଡ଼ାଇ,
ମୁଁ ଏକ ଅଲୋଡ଼ା ଛିନ୍ନ-ପତ୍ର,
ଉଡ଼ି ଉଡ଼ି ଘୁରି ଘୁରି
ବୁଲୁଛି ଅସୀମ ଶୂନ୍ୟରେ ।

ଏ ଏକ ନୂତନ ଦିଗନ୍ତ,
ଏ ଏକ ନୂତନ ପୃଥିବୀ,
ଏଠି ମୋତେ ପୋତି ଦେଲେ
ମୁଁ କଣ ବଞ୍ଚିବି ?
ମୋର ଚେର ପୁଣି ଗଜୁରିବ,
ଦେହ ମୋର ଭରିଯିବ
ଶାଗୁଆ ନବ-ପତ୍ରିକାରେ ?
ମୁଁ କଣ ସଞ୍ଚରି ଯିବି
ପୁଣି ଏକ ମହୀରୁହ ପରି
ମାଟିର ଗଭୀରତା ମାପିବାକୁ,
ଠିଆ ହେବି ସଦମ୍ଭରେ
ମୁଣ୍ଡ ଟେକି ପୁଣି ?

କିନ୍ତୁ ପାଣିପାଗ ପ୍ରତିକୂଳ ଏଠି,
କଙ୍କରିଳ ପାହାଡ଼ିଆ ଭୂମି,
ଚେର କଣ ମାଡ଼ିବ ସତରେ ?
ଏ ଝଡ଼ ସଙ୍ଗେ ଜନ୍ମ ମୋର
ତାଳ ମିଳୁ ନାହିଁ,
ଏ ଝଡ଼ ବଡ଼ ସର୍ବନାଶୀ,
ଏ ଝଡ଼ ବଡ଼ ସର୍ବଗ୍ରାସୀ,
ଚାରିଆଡ଼େ ଅନ୍ଧାର,
ଚାରିଆଡ଼େ ଧୂଳି,
ସବୁକିଛି ଅବିନ୍ୟସ୍ତ,
ଜୀବନଟା ଯାଉଛି ଉଜୁଡ଼ି,
ଜୀବନଟା ଯାଇଛି ହୁଗୁଳି ।



# ଆଜି ଜନ୍ମଦିନ

କେହି କଣ ଜାଣିଥିଲା
ଆଜି ମୋର ଜନ୍ମଦିନ ବୋଲି,
କେହି କଣ ଭାବିଥିଲା
ମୋ ପରି ଜଣେ ଲୋକ
ଜନ୍ମନେବ ଏନ୍ତୁଡ଼ିଶାଳରେ,
ଏହିଠାରେ ପୁଣି ?

ଏ ଏକ ଅନ୍ଧଗଳି,
ଭୁଲରେ ବି ଜହ୍ନ ପଶେ ନାହିଁ
କିନ୍ତୁ ମୋ କବିତାରେ
ଜହ୍ନର ଅଛି ଅତି
ବିଶିଷ୍ଟ ଭୂମିକା,
ମୁଁ ଲେଖିଛି ଅନେକ ସନେଟ,
ଯେଉଁଠି, ସିନେମା ନାୟିକା ଭଳି
ଜୋଛନାର ପୂର୍ଣ୍ଣ ବିଭବରେ,
ଜହ୍ନ ଆସି ଉଭା ହୁଏ
ଆକାଶରେ ପୁଣି ।

ହାତରେ ଫୋଲିଓ ବ୍ୟାଗ,
ମୁଁ ଆଜି ପାଲଟିଛି କବି,
ଯତ୍ନରେ ପଞ୍ଜୀକୃତ ପାଣ୍ଡୁଲିପି ଧରି,
ବାଛୁରୀ ବାଳକୁ ଛାଟି,
ଅଳ୍ପ ହସି ଟିକେ ନଇଁ ପଡ଼ି
ମୁଁ ଖୋଲେ ଜୋତାର ଫିତା
ପ୍ରକାଶକ ଦୋକାନ ଆଗରେ ।
ଆଖିରେ ମୁଁ ପିନ୍ଧି ନାହିଁ

ବିଦେଶୀ ଚଶମା କିମ୍ବା
ପକେଟରେ ନାହିଁ ମୋର
ସୁନାର କଲମ ।
ମୁଁ ଜାଣେ ସେଲୁନ୍‌ବାଲା
ପାଇ ନାହିଁ ପଇସା ବହୁଦିନୁଁ
ମୁଁ ଜାଣେ ଧୋବାର ଫର୍ଦ୍ଦ
କ୍ରମଶଃ ହୋଇଛି ଦୀର୍ଘ
ଏବଂ ଜଟିଳ,
ସନ୍ଧ୍ୟାର ଡାଲି-ରୋଟି
କ୍ୱଚିତ୍ ଗୋଟେ ଓମଲେଟ,
କେମିତି ଜୁଟାଇବି ଭାବି ଭାବି
ପାଏ ନାହିଁ ଥଳ କିମ୍ବା କୂଳ ।
ମୁଁ ଜାଣିଛି, ଆଜି କିନ୍ତୁ
ପ୍ରେୟସୀ ମୋ ପ୍ରତୀକ୍ଷାରେ ଅଛି,
ଠିଆ ଥିବ ଝର୍କା ପାଖେ
ମୋ ଫେରିବା ରାସ୍ତାକୁ ଅନାଇ,
ଆଜି ମୋର ଜନ୍ମଦିନ
ତଥାପି ମୁଁ କାହିଁକି ଫେରିନି,
ସହଳ ସହଳ
ଆଖି ତାର ଲୁହ ଜର ଜର,
ବୋହି ଆସେ ଆଖିର କଜଳ,
ଅଭିମାନ କରିଛି ସେ
କଥା କହିବନି' ।



# ଟ୍ରକ-ଚାଳକର ଡାଏରୀ

ମୋ କାନ୍ଧରେ ଓହଳିଛି ଜହ୍ନ,
ମୋତେ ପୂରା ଓଦା
କରିଦେଇ ଶୁଭ୍ର ପାରଦରେ ।
ପ୍ରବଳ ଜୋଛନାରେ ମୁଁ ତିନ୍ତୁଛି,
ମୋ ଦେହ ସମ୍ପୂର୍ଣ୍ଣ ସିକ୍ତ
ଚନ୍ଦ୍ର କିରଣରେ ।
ଆଉ ତିନ୍ତୁଛି ମୋ ଟ୍ରକ୍,
ମୁଁ ଏକ ଟ୍ରକ୍‌ର ଚାଳନକ ।

ରାତିର ଅଭ୍ୟସ୍ତ ଗୀତ
ସରିଯାଏ ହଠାତ୍,
ତୀକ୍ଷ୍ଣ ତରବାରି ଦେଇ
କାଟି ଦିଏ ସହରର
ଯାବତ୍ ରହସ୍ୟ କେହି ଜଣେ ।
ଜହ୍ନ ଆସି ଠିଆ ହୁଏ
ରାତିର ଦାଢରେ,
ଆଉ ଟିକେ ଘୁଞ୍ଚିଲେ ସେ
ଟୁପ୍ କରି ଖସି ଯିବ
ଆକାଶ ଦେହରୁ ।

ସହରକୁ ଚିରି ଦେଇ
ଫାଳ ଫାଳ କରି
ଟ୍ରକ ଚାଲେ ସୀମାନ୍ତର
ପ୍ରତ୍ୟନ୍ତ ଗ୍ରାମକୁ ।
ଦଉଡ଼ି ଖଟିଆ ପାରି
ଶୋଇ ରହେ ଦାମ୍ଭିକ ଢାବା,
ଏଠି ମିଳେ କୁକୁଡ଼ାର ଟାଙ୍ଗ
ଆଉ ପଞ୍ଜାବୀ ନାନ୍ କିଛି
ଦାମ ବେଶି ନୁହେଁ ।

ନିଦ ଧକ୍କା ମାରେ ଆସି
ମୋ ଆଖିରେ ରାତି ବେଶି ହେଲେ ।
ମୁଁ ଏକ ଟ୍ରକ୍-ଡ୍ରାଇଭର,
ଓହ୍ଲାଏ ମୁଁ ଚାହା ପିଇବାକୁ,
କିନ୍ତୁ ମୁଁ ଯାଇ ଦେଖେ,
ତନ୍ଦୁରୀ ପାଖର ଚଉକି
ଜହ୍ନ ଆସି ମାଡି ବସି ଅଛି ।

ଏଥର ମୁଁ ସଳଖେ ନିଜକୁ,
ଶକ୍ତ ହାତେ ଷ୍ଟିଅରିଂ ଧରି,
ଟ୍ରକ ଚାଲେ ଦ୍ରୁତ ଗତି
ଧାନ କ୍ଷେତ, ଗାଁର ମଶାଣି,
ପାରି ହୋଇ ନିମେଷକେ ପୁଣି
ଟ୍ରକ ସଙ୍ଗେ ତାଳ ଦେଇ
ଆକାଶରେ ଜହ୍ନ ଭାସି ଚାଲେ ।
ସରି ଆସେ ଟାଙ୍କିରୁ ଡିଜେଲ,
ଆକାଶୁ ଓହ୍ଲାଇ ଆସି
ଟ୍ରକରେ ଚଢି ବସେ ଜହ୍ନ
ମଝି ରାସ୍ତାରେ ।
ଅବଶ୍ୟ ସେ ଭଡ଼ା ଦେବ ନାହିଁ ।

ଆସିଗଲା ଆମ୍ବ ତୋଟା,
ଟିକିଏ ଆଢ଼େଇ ହୋଇ
ଟ୍ରକ ଚାଲେ ଦିଗନ୍ତ ଆଡ଼କୁ,
ଏଠି ଦିନେ ଆମ୍ବଗଛ ଡାଳେ
ଝୁଲିଥିଲା କୁମ ଅପା
ବେକରେ ଦଉଡ଼ି ଲଗାଇ ।
ଏ ସବୁ ଦେଖୁଛି ଜହ୍ନ
ଲୁଚି ଲୁଚି ପତ୍ର ଆଡୁଆଳୁ ।
ମୁଁ ଆଜି ଟ୍ରକ-ଡ୍ରାଇଭର,
ପାଳଭୂତ ବିଲ ମୁଣ୍ଡେ
ମୋ ଲାଗି ଅପେକ୍ଷା କରିଛି,
ମୋ ସଙ୍ଗେ ତା ଦୀର୍ଘ ପରିଚୟ,
ତା ଆଖିରେ ନିଦ ନାହିଁ
ଅଳ୍ପ ଟିକେ ଖୁସି-ଗପ
ହେବ ବୋଲି ପ୍ରତୀକ୍ଷାରେ ଅଛି ।
ଜହ୍ନର ଆପାତତଃ ଅନ୍ୟକାମ
ନାହିଁ,
ସେ ବି ଆମ ସାଙ୍ଗେ ମାତିବ
ଗପରେ ।

ସେଦିନ ବର୍ଷା ହେଲା ଖୁବ,
ଜହ୍ନ ଓଦା ହୋଇଗଲା ଅତି
ତା ପାଖେ ନଥିଲା କିଛି
ଛତା ବା ବର୍ଷାତି ।
ଟ୍ରକର ଗର୍ଜନ ସଙ୍ଗେ
ତାଳ ଦେଇ ପେଚା ଓ ବାଦୁଡ଼ି
ଉଡୁଥାନ୍ତି ଏଣେ ତେଣେ ଖାଲି ।

ଏଠି ସେହି ବରଗଛ,
ଭୂତଙ୍କର ମୁଖ୍ୟ ଆଡ଼ା-ସ୍ଥଳୀ,
ଟ୍ରକ କଣ ଏଠି ଠିଆ ହେବ ?
ଏଠି ଦିନେ ଦାସ ବାବୁ
ହୋଇଥିଲେ ବେତାଳ ଭେଟଣା,
କଣ ଗୋଟେ ଖପ୍ କରି
ଗଛରୁ ଓହ୍ଲାଇ ଆସି
ଧରିଥିଲା ଭିଡି ତାଙ୍କ ଡେଣା ।

ଏଥର ଟ୍ରକ ଯିବ ଈଷତ୍ ଦକ୍ଷିଣ,
ଯେଉଁଠି ମାଟି ଘର, କିଞ୍ଚିତ୍ ଅଗଣା,
ମଝିରେ ତୁଳସୀ ଚଉରା,
ପଡିଅଛି ଚିତା ଚାରିଆଡେ,
ଏଠି ମୋର ପ୍ରେମିକା
ଶୋଇଛି ନିଘୋଡ ନିଦରେ,
ଜାକିଜୁକି ପୁରା ଗୋଲ ହୋଇ,
ଯେତେ ହର୍ନ ଦେଲେ ସୁଦ୍ଧା
ନିଦ ଭାଙ୍ଗିବନି ।

ଏ ଏକ ଆଦିମ ତ୍ରିଭୁଜ,
ମୁଁ ଆଉ ଜହ୍ନ ଆଉ
ପ୍ରେମିକା ରହିଛି ମଝିରେ ।
ହର୍ନ ଶୁଣି ପ୍ରେମିକାର
ନିଦ ଭାଙ୍ଗିବନି,
ଜହ୍ନ ମୋ' ପିଛା ଛାଡ଼ିବନି,
ଓହ୍ଲାଇବ ନାହିଁ ସେତ
ଟ୍ରକର ଡାଲାରୁ,
କେବେ ହେଲେ ।



# ପଳାତକ

ଭାଙ୍ଗିପଡ଼େ ଶେଷ
ଅବରୋଧ,
ଫେରିଯାଏ ଅଶ୍ୱାରୋହୀ
ରଣଭୂଇଁ ଛାଡ଼ି ।
ଗ୍ଲାନିରେ ମୁଣ୍ଡ ପୋତି
ଫେରୁଛି ସେ ଘରକୁ
ଏଥର ।
ଭୁଷୁଡ଼ି ପଡୁଛି ଭାଙ୍ଗି
ଖଣ୍ଡ ଖଣ୍ଡ ହୋଇ
ଜୀବନର ଶେଷ ମେହେରାବି,
ହଜିଛି ତା ଜୀବନର ଚାବି ।

ଶାନ୍ତି ସେ ଖୋଜିଥିଲା
ପର୍ଯ୍ୟାପ୍ତ ସମୟର ନିଷ୍ଫଳ
ସ୍ଥିର ପ୍ରତିଶ୍ରୁତି,
କିଛି ବିରଳ ନିଦ,
ପ୍ରାର୍ଥିତ ପେଲବ ପ୍ରତ୍ୟୟ,
କିଛି ଉଷ୍ମ ଆଲିଙ୍ଗନ
କିଛି ପାଇଲାନି' ।
ସମୟର ତୀବ୍ର ଅପଚୟ,
ଯୌବନ୍ ଅପଗତ ପ୍ରାୟ,
ଯୁଯୁଧାନ ହ୍ରେସ୍ୱା ରବ
ଏଣେ ତେଣେ ପଡ଼ି ରହେ ଖାଲି ।

ମୃତ୍ୟୁକୁ ସେ ପ୍ରତ୍ୟକ୍ଷ
କରିଛି,
ବୀଭତ୍ସ, ବିକଟାଳ ଛାଇ
ଶାଗୁଣାର ଡେଣା ଭଳି
ଆକାଶରୁ ଆସୁଛି ଓହ୍ଲାଇ,
କ୍ଷୀୟମାନ ଜହ୍ନ ଆଲୁଅରେ ।
ଦେଖି ସେ ଚମକି ପଡ଼ି
ମୁଦି ଅଛି ଆଖି ।

ସେଦିନ ଆକାଶରେ ନକ୍ଷତ୍ରଙ୍କ
ବିପୁଳ ସମ୍ଭାର,
ସେମାନେ ଦେଖିଲେ ଚାହିଁ
ସେ ଏକ ପଳାତକ ବୋଲି ।
ସେ ଆଜି ଫେରୁଅଛି
ପରିତ୍ୟକ୍ତ ରଣଭୂମି ଛାଡ଼ି ।
ଶିରସ୍ତ୍ରାଣ, ବର୍ମ ଆଉ
ଯେତେକ ଆୟୁଧ,
ଫୋପାଡ଼ି ଦେଇଛି ସେତ
ଗୋଟି ଗୋଟି କରି,
କେବଳ ଏକ ଭଙ୍ଗା ଖଣ୍ଡା
ହାତେ ରହିଅଛି ।

ସେ କଣ କାପୁରୁଷ ପିନ୍ଧିଥିଲା
ଯୋଦ୍ଧାର ମୁଖା,
ସେ ପାରିନି ଲଂଘିବାକୁ
ଜୀବନର ସୁଉଚ୍ଚ ପରିଖା,
ବ୍ୟଭିଚାରୀ ସମୟର ପ୍ରାପ୍ୟ
ସେ ଦେଇ ନାହିଁ ବୋଲି,
ବ୍ୟର୍ଥ ଆଜି ଶେଷ ଗୋଧୂଳିରେ ?

■■■

# ଅନ୍ୱେଷଣ-୨

ତୁମକୁ ଖୋଜି ଖୋଜି
ପହଞ୍ଚିଛି ଅଜଣା ଦେଶରେ ।
ଏଠାର ନଈ-ନାଳ, ବଣ-ବୁଦା
ପାହାଡ଼ର ସବୁ ଅବୟବ,
ଖୋଜିଛି ମୁଁ ତନ୍ନ ତନ୍ନ କରି ।
ପାଇନି ତୁମର ଦେଖା
କେଉଁଠି ବି,
ଚାରିଆଡ଼େ ପଡି ରହେ
ନିଷ୍ଠୁର ବିରହ ।
ଏ ଏକ ଅଜଣା ଗ୍ରହ,
ଏଠି କିଛି ଚିହ୍ନି ହୁଏ ନାହିଁ ।

ତୁମର କୌଣସି ଛାଇ
ଭାସୁ ନାହିଁ ନଈର ପାଣିରେ,
ତୁମର କୋମଳ କଣ୍ଠ
ବାଜୁ ନାହିଁ କେଉଁଠାରେ ହେଲେ ।
ବହୁ ଦିନ ବିତିଗଲା,
ବହୁ ରାତି ହଜିଗଲା
ଅଶାନ୍ତ ଝଡ଼ରେ
ଛିନ୍ନ ଭିନ୍ନ ହୋଇ ।
କେଉଁଠି ସନ୍ଧାନ ନାହିଁ
ତୁମ ପରି କୌଣସି ନାରୀର ।

ଚିହ୍ନବର୍ଣ୍ଣ ନାହିଁ ତୁମ
ଅଲରା ବାଳର, ଶଙ୍ଖର ପାନିଁଆ, କିମ୍ବା
କାହିଁ ହେଲେ ପଡି ନାହିଁ
ତୁମର ସେ ବିଷଣ୍ଣ ରୁମାଲ,
ଯେଉଁଥିରେ ରହି ରହି
ଓଠ ପୋଛୁ ଥିଲ ?

ସେଦିନ ଶୋଇଛି ମୁଁ
ଅନେକ ରାତିରେ,
ଦୂରେ ଶୁଭେ ସମୁଦ୍ରର ସ୍ୱର,
ସ୍ତବ୍ଧ ଚରାଚର,
ଶୁଭେ ନାହିଁ ଚଢେଇଙ୍କ
କଳି ବା କାକଳି,
ସେମାନଙ୍କ ଡେଣାର ଘ୍ରାଣ
ପବନରେ ଭାସେ ।
ତୁମେ କଣ ଶୋଇ ଅଛ
ବେଳାଭୂମି କୋମଳ ଘାସରେ ?
ତୁମର ଦେହ ନେଇ
ଖେଳୁଛନ୍ତି ସାନ ସାନ ଢେଉ
ତୁମର ବିସ୍ରସ୍ତ ବାଳ ଭାସୁଅଛି
ସମୁଦ୍ର ପାଣିରେ ।
ଶୁଭ୍ର ପାରାବତ ପରି
ତୁମର ଯୁଗ୍ମ ସ୍ତନ
ଚୁପ୍ ଚାପ୍ ଶୋଇଛି ଛାତିରେ,
ତାଳି ମାରି ଉଡ଼ାଅ
ନାହିଁ ତାଙ୍କୁ,
ସେମାନେ ଶୋଇଥାନ୍ତୁ ନିଘୋଡ଼ ନିଦରେ
ପରସ୍ପର ଢାକିଢୁକି ହୋଇ ।

ମାଛମାନେ ଖେଳୁଛନ୍ତି
କରି ପ୍ରଦକ୍ଷିଣ ଦେହର ଅନ୍ଧିସନ୍ଧି
ଛୁଇଁ ଛୁଇଁ ନାଭି, ଓଠ, ହାତର ପାପୁଲି,
କିମ୍ବା ଭୂଲତା ଓ ଆଖିପତା କ୍ରମାଗତ ।

ଆକାଶରୁ ଓହ୍ଲାଉଛି ଅପୂର୍ବ
ଆଲୋକ ପରି ପବିତ୍ର ବିଷାଦ,
ତୁମେ କଣ ଉଠିବନି ଅନାବନା
ଘାସର ଶେଯରୁ
ଦେଖିବାକୁ ରାତିର କର୍କଶ ଖୋଳପା
କେମିତି ଭାଙ୍ଗି ଭାଙ୍ଗି ଯାଏ ?

■■■

# ନାଁ କହିବିନି

ମୂଳରୁ ପୃଥୁଳା ନୁହଁ,
ତନ୍ୱୀ, ଗୋରୀ ଅବଶ୍ୟ
ସୁନ୍ଦରୀ,
କିଶୋରୀ ସେ, ପୃଷ୍ଠା ସଂଖ୍ୟା
ଅଶି ଟପିବନି ।
ସେ ମୋତେ ମୁଗ୍ଧ କଲା,
କିଣି ନେଲା ମୋତେ ଗୋଟାପଣ,
ସେ ଦିନ ଅଦିନ ଶ୍ରାବଣ ।
ଶିଖାଇଲା କେତେ କଥା,
ଚିହ୍ନାଇଲା ତୁନି ତୁନି
କେମିତି ଛୁଇଁ ଦେଲେ
ଗୋପନ ଗ୍ରନ୍ଥି ଏକ
ଫିଟି ଯାଏ ନିଷିଦ୍ଧ କବାଟ
ଆସ୍ତେ ଆସ୍ତେ କରି,
କ୍ଷୀଣ-କଟି ବହି ଗୋଟେ
ଦାମ ବେଶି ନୁହଁ ।

ସେତେବେଳେ ବିମୁଗ୍ଧ କୈଶୋର,
ମନ ହୁଏ ସବୁ କିଛି
ଭଲ ପାଇବାକୁ,
ତା ପୃଷ୍ଠାରେ ବର୍ଣ୍ଣିଥିବା
ଯାବତ୍ କଥାକୁ
ଧୀରେ ଧୀରେ ଅଙ୍ଗେ ନିଭାଇଲି ।
ସବୁ ମୋହ ଭାଙ୍ଗି ଗଲା
ସବୁ ସୁଖ ପାଣି ଫାଟିଗଲା,

ଦୁଃଖ ପରି ପ୍ରିୟ ଋତୁ
ଗ୍ରାସିଗଲା ହୃଦୟକୁ ମୋର
ସେତେବେଳେ ବିମୁଗ୍ଧ କୈଶୋର ।
ସେ ବହିର ମିଠା ସ୍ପର୍ଶ
ବଳ ଦେଲା ଦୁଃଖ ଭୁଲିବାକୁ,
ମୋ ଛାତିରେ ମୁହଁ ମାଡି
ଶୋଇ ଶୋଇ ସେ କହିଲା ଦିନେ,
'ମନେ ରଖ, ଜହ୍ନ କିଛି
ନିତି ଆସେ କାହିଁ,
ଆସିଲେ ଫେରାଅ ନାହିଁ, ତାକୁ,
ଭୀଷଣ ବୋକା ତୁମେ,
ଜୋଛନାକୁ ଭୁଲ ବୁଝ ନାହିଁ ।'
ବହିଟା ଅତି ସାନ
ରେକ୍ସିନ୍‌ରେ ବନ୍ଧା ତାର ଦେହ ।
ନାଁ ତାର ମନେ ଅଛି
କିନ୍ତୁ କହିବିନି ।
ସେହି ମୋତେ ଶିଖାଇଛି
ସ୍ୱପ୍ନ ଦେଖିବାକୁ,
ସେ ମୋର ପରମ-ବନ୍ଧୁ,
ଚିର ସଖା ସ୍ମୃତିର ସୋହାଗ ।
କ୍ରମେ ମୁଁ ବଡ ହେଲି
ହୃଦୟରେ ଭରି ଗଲା
ରକ୍ତ ପରି ଗୋଧୂଳି କେବଳ ।
କିନ୍ତୁ ମୁଁ ଭୁଲି ନାହିଁ ତାକୁ,
ଅତି କ୍ଷୀଣ ବହି ଗୋଟେ
ଅବଶ୍ୟ ମୁଁ ନାଁ କହିବିନି ।



# ପରାଜୟ

ମୁଁ ହାରିଯାଇଛି ଆଜି
ଜୀବନର ଅସମ ଯୁଦ୍ଧରେ,
ମୋ ପାଖରେ ରହିଛି କେବଳ
କିଛି ଅପଯଶ, କିଛି ଅନ୍ଧକାର,
ଆଉ କିଛି ଅନ୍ତଃସାର-ଶୂନ୍ୟ ସ୍ଥିତି ।

ବର୍ଷ ବର୍ଷ ଅପଚୟ ପରେ
ମୁଁ ସମ୍ଭାଳିଲି ନିଜକୁ ଶେଷରେ
ଉପତ୍ୟକାର ପ୍ରତ୍ୟନ୍ତ ସୀମାରେ ପହଞ୍ଚି ।
ଏଠି ରାସ୍ତା ନାହିଁ କେଉଁଠି,
ଅବଲମ୍ବନ କିଛି ହେଲେ ନାହିଁ,
ଆଗେଇବା ମାନେ ମୃତ୍ୟୁ,
ଶୂନ୍ୟତାକୁ ମାପିବା କେବଳ ।
ଝାସ ଦେବା ପୂର୍ବରୁ ପାତାଳକୁ
ଆତ୍ମଘାତୀ ଉଲ୍ଲମ୍ଫନରେ,
ଭୌଗୋଳିକ ଜଳପ୍ରପାତ ପରି
ଶେଷ ହେବ କଣ ସବୁ କିଛି ।

ତୁମର ନିଷ୍ପ୍ରାଣ ମୁଖା,
ଅଭିନୟର ଅପୂର୍ବ କୌଶଳ
ସମୟକୁ ଠକି ପାରି ନାହିଁ ।
ଅସୁମାରୀ ଇଚ୍ଛା ସବୁ
ମରିଛନ୍ତି ପାଦ ତଳେ ଆସି,
କ୍ଷମାର ଯୋଗ୍ୟ ନୁହେଁ
ତୁମର ଯାବତ୍ ଚାତୁରୀ
ହେ ଛଳନାମୟୀ !

ମୁଁ ପିଇଛି ତୁମର ଅଧର,
ବିଷାକ୍ତ କାମନାରେ ବୋଳା,
କରିଛି ନିଃଶେଷ ତାକୁ
ଶୋଷି ଶୋଷି ଅଳ୍ପ ଅଳ୍ପ କରି ।
ତୁମର ନିର୍ଲଜ୍ଜ ସ୍ତନର ଔଦ୍ଧତ୍ୟ,
ନିର୍ଲୋମ ଉଚ୍ଛୃଙ୍ଖଳ ନାଭିର
ଇଙ୍ଗିତ, ସହିଛି ଅକାତରରେ,
କ୍ଲେଦାକ୍ତ ଆଦିମ ଯୋନୀର
ଆହ୍ୱାନକୁ ଉପେକ୍ଷା କରିଛି
ଅନାୟାସେ ।
ଆଉ ତାପରେ
ଚାଲି ଯାଇଛି ଦୂରକୁ
ବହୁତ ଦୂରକୁ,
ଯେଉଁଠୁ ଆଉ ଫେରି
ହୁଏ ନାହିଁ ।



# ଶାନ୍ତି

ଶାନ୍ତି ଶୋଇଛି ଦେଖ
ଆକାଶ ଦେହରେ,
ନଈର ମୁହାଁଣରେ ବି
ଶାନ୍ତିର ଖଟ ପଡିଅଛି,
ଅଳସ ଭାଙ୍ଗୁଛି ଶାନ୍ତି
ପାହାଡ଼ ଚୂଡ଼ାରେ ଶୋଇ ଶୋଇ ।

କେତେବେଳେ ଶାନ୍ତି ପୁଣି
ପହଞ୍ଚିଛି ସାଗର ବେଳାରେ ।
ବାଲିରେ ବସି ବସି
ଚୁପ୍ ଚାପ୍ ଦେଖିଅଛି
ଢେଉଙ୍କ ଅଶ୍ରାନ୍ତ ଉଚ୍ଛ୍ୱାସ ।
ଜୀବନର ସୈକତରେ
ପ୍ରବଳ ବିରୋଧୀ ଜୁଆର,
ଫେନିଳ ଜଳରାଶି
ବାରମ୍ବାର ଗ୍ରାସ କରେ
ଜୀବନକୁ ଆସି ।
ଶାନ୍ତି ହଜି ଯାଏ ପୁଣି
ସାମୁଦ୍ରିକ ଲୁଣିଆ ପାଣିରେ ।
ଶାନ୍ତି କଣ ଗଡ଼ି ଗଡ଼ି
ଗୁଡ଼କଙ୍କ ଭଳି
ବାଲିବନ୍ତ ତଳେ ତଳେ
ଘୁଞ୍ଚି ଘୁଞ୍ଚି ଯାଉଥିବ ଖାଲି
ଧରା ଦେବ ନାହିଁ ?

ନିଛାଟିଆ ନଈପଠା
ଶାନ୍ତିର ପରମ ଆଶ୍ରୟ,
ଏଠି ଶାନ୍ତି ବୋଳାଥାଏ
କାଶତଣ୍ଡୀ ବଣରେ ବଣରେ ।
ଅପନ୍ତରା ଡେଇଁ ଯେଉଁ
ବିସ୍ତୀର୍ଣ୍ଣ ଘାସର ଗାଲିଚା
ସେଠିବି ଶାନ୍ତି ଅଛି
ସେ ଦୋହଲୁଛି ଶାନ୍ତ ପବନରେ
ସାନ ସାନ ଘାସ-ଫୁଲ ହୋଇ ।

ସହରର ଛାତ ସବୁ
ଶାନ୍ତିର ପ୍ରିୟ ଚରା-ଭୂଇଁ
ଶାନ୍ତି ସେଠି ଧରାଦିଏ
ଅବିରଳ ଜହ୍ନ ଆଲୁଅରେ,
ନିହତ ଗଜଲର ସ୍ୱର
ଫେରି ଫେରି ଆସେ ।

ବେଳେ ବେଳେ ଶାନ୍ତି କିନ୍ତୁ
ହଜି ଯାଏ ଜନ-ଅରଣ୍ୟରେ ।
ମଟର ଗାଡ଼ିର ହର୍ଣ୍ଣ,
ଟି:ଭିର ଅଶ୍ଳୀଳ ଚିତ୍କାର
ଶାନ୍ତିକୁ ଗ୍ରାସ କରେ ଆସି ।
ଶାନ୍ତି କାହିଁ, ଶାନ୍ତି କାହିଁ,
ଖୋଜିଲେ ବି ଶାନ୍ତି
ମିଳେ ନାହିଁ ।
ଶାନ୍ତି ବଡ ଅଲିଅଳ
ଟିକିଏ କୋଳାହଳ
ସହି ପାରେ ନାହିଁ,
ଚୁପ୍ କରି ଶାନ୍ତି
ଖସି ଯାଏ ।

ଶାନ୍ତି ଅଛି ମଶାଣିରେ,
ଚିତାର ନିଁଆରେ ଅଛି'
ଶାନ୍ତିର ଚରମ ସ୍ୱାକ୍ଷର,
ପୋଡ଼ି ଯାଏ ଜୀବନର
ସମସ୍ତ ଜଞ୍ଜାଳ
ଏକ ମୁହୂର୍ତ୍ତରେ ।



# ଶେଷଟ୍ରେନ୍

ସୀମାନ୍ତକୁ ଯିବ ଟ୍ରେନ ଗୋଧୂଳି ବେଳାରେ। ଟ୍ରେନ ଯିବ ଅଣନିଃଶ୍ୱାସୀ। ତୀବ୍ର ଗତି, କୌଣସି ଷ୍ଟେଶନରେ ଠିଆ ହେବ ନାହିଁ। ମୁଁ କାହିଁକି ଏ ଟ୍ରେନର ଯାତ୍ରୀ ହେଲି ବୁଝି ପାରୁ ନାହିଁ। ମୋ ଓଠରୁ ଚୁମ୍ବନର ଦାଗ ଲିଭି ନାହିଁ। ଶୈଶବ ଏକ ବଧିର ବେଲୁନ୍-ବିକାଳି। ଡାକିଲେବି ସେ ଆଉ ଫେରି ଆସେ ନାହିଁ। ଆସ୍ତେ ଆସ୍ତେ ହଜିଯାଏ ଜନ-ଗହଳିରେ। ଆଉ ହଜେ ତାର ସମସ୍ତ ବେଲୁନ୍, ଲାଲି, ନେଳି, ହଳଦିଆ। ଶୈଶବର ପ୍ରଜାପତି, ଉଡନ୍ତା କଙ୍କି, ସାଧବବୋହୂ ଆଉ ଭଙ୍ଗା ପେଁକାଳୀ ମୁଁ ଛାଡି ଆସିଛି ଦୂରରେ।

କୁମ ଅପାକୁ ସେଦିନ ଲାଗିଲା କାଳିଶୀ। ଆମେ କେହି ଗଲୁ ନାହିଁ ଯାତ୍ରା ଦେଖିବାକୁ ଚନ୍ଦନ ପଡିଆ। କୁମ ଅପାର ଠିକଣା ମୋର ଆଉ ମନେ ନାହିଁ ଆଜି। ସମସ୍ତ ବୁଢ଼ା ବରଗଛ, ମେଘ ରଙ୍ଗର ପାହାଡ, କାଶତଣ୍ଡୀ ଫୁଲ ମୁଁ ଖୋଜି ପାଉ ନାହିଁ। ସେମାନେ କୁଆଡ଼େ ଗଲେ ସବୁ ?

ସୀମାନ୍ତକୁ ଯିବ ଟ୍ରେନ୍। ଓଠରେ ମୋର ଚୁମ୍ବନର ଦାଗ। ମୁଁ ଏକ ଘୂର୍ଣ୍ଣିଝଡ଼ର ହାବୁଡ଼ରେ ପଡ଼ିଛି। ସେ ମୋତେ ନିମେଷକେ ନେଇ ଯାଏ ଅତୀତ ଓ ଭବିଷ୍ୟତକୁ। ସେ ମୋର ପ୍ରିୟ ସାଥୀ, ବନ୍ଧୁ ଓ ମୁଖ୍ୟ ସହାୟକ। ଆଉ ମୋର କେହି ନାହିଁ ଇହଜଗତରେ। କବିତା ମୋ ହାତ ଧରି ନେଇ ଯାଏ ଭବିଷ୍ୟତ ଆଡ଼େ। ଯାଦୁଦଣ୍ଡ ଈଷତ୍ ହଲାଇ ସେ ମୋତେ ଦେଖାଏ 'ମେଜିକ୍'। ସେ ମୋତେ ଦେଖାଏ ଏକ ପ୍ରାନ୍ତର। ନୀରବତା ସେଠି ରୂପ ଧରି ଦଣ୍ଡାୟମାନ। ଆଉ କିଛି ରଙ୍ଗୁ ଗଛ ଆକାଶକୁ ଆଉଜି ଠିଆ ଥାନ୍ତି ପ୍ରତୀକ୍ଷାରେ।

ଟ୍ରେନ୍ ଯିବ ସୀମାନ୍ତକୁ। ଏଇନେ ଛାଡ଼ିବ। ଥରି ଉଠୁଛି ପ୍ଲାଟଫର୍ମ। ଥରଥର ହୋଇ ଥରୁଛି ମୋର ସମଗ୍ର ସତ୍ତା। ଥରୁଛି ମୋର ରିକ୍ତ ଓଠ କିଛି କହିବାକୁ। ଆଉ ଏକ ବିବସନା ନାରୀ ଗୋଧୂଳି ବିକୁଛି ଦାଣ୍ଡର ଜହ୍ନ ଆଲୁଅରେ। ଏଥର ବାଜି ଉଠିବ ଟ୍ରେନର ମ୍ଳାନ 'ହୁଇସିଲ୍'।



# ଜାହାଜ ବୁଡୁଛି

ମୁଁ ଦେଖିଛି ଜାହାଜ ବୁଡ଼ିବା,
କେମିତି ସେ ବୁଡ଼ିଯାଏ
ସମୁଦ୍ରର କୃତଘ୍ନ ଲୁଣିଆ ପାଣିରେ,
ଧୀରେ ଧୀରେ ଖୁବ ଧୀରେ ଧୀରେ ।
ସମୁଦ୍ର- ସାରସ ତାର ଶୁଭ୍ର
ଦେହ ଧରି
ଆଉ ଆସି ବସେ ନାହିଁ
ଜାହାଜର ଭଙ୍ଗା ମାସ୍ତୁଲରେ ।

ଏ ଜାହାଜ ସହିଛି ଝଡ଼ର ଦାଉ
ଅନେକ ଅନେକ,
ଦାରୁଚିନି ବନ୍ଦର ଶୋକ
ପାରି ନାହିଁ ଭୁଲି, କିମ୍ୱା
ଅଲେଇଚ ଦ୍ୱୀପର ସେହି
ଗାଢ଼ ଶ୍ୟାମଳିମା ।
ଏ ଜାହାଜ ବେଳେ ବେଳେ ପଡିଅଛି ଧରା
ପାଣିର ଭଉଁରୀରେ,
ଜାହାଜର ଅଣ୍ଟା ଆଉ ପିଠି
ଭାଙ୍ଗି ଯାଇଛି ସେହି
ତୀବ୍ର ଆବର୍ତ୍ତରେ,
ଫେନିଳ ଜଳରାଶି ଆସି
ଗ୍ରାସିଛି ତା ସମଗ୍ର ସତ୍ତାକୁ ।

ତୁମେ କେଭେ ଦେଖିଛକି
ଜାହାଜ କେମିତି ବୁଡ଼େ
କିପରି ଅଣେଇ ପଡ଼େ
ଜାହାଜର ଛାତି, ଗୋଟାଏ 'କଡ଼କୁ ?
ପ୍ରତିକୂଳ ପବନରେ କିଭଳି ଯନ୍ତ୍ର ସବୁ
କ୍ରମଶଃ ହୁଅନ୍ତି ଅଚଳ ?
ତୁମେ କେବେ ଶୁଣିଛ କି
ସମ୍ମିଳିତ ବିକଳ ଚିତ୍କାର
ବୁଡ଼ିଗଲା ବେଳେ ?

ଯେତେବେଳେ ଜାହାଜର ହୃତ୍‌ପିଣ୍ଡ
ହୋଇଯାଏ ବେବାକ ଅକାମୀ,
ଘାଣ୍ଟୁ ହୋଇ ପଡ଼େ ସମସ୍ତ କମ୍ପାସ,
ପାଣି ପଶେ ଜାହାଜ ପେଟରେ,
ମୃତ୍ୟୁଘଣ୍ଟି ବାଜି ଉଠେ
ଖୁବ ଜୋରେ ଜୋରେ ।
ଜାହାଜର ପ୍ଳୀହା ଓ ଯକୃତ୍
କାମ ଆଉ କରେ ନାହିଁ,
ଜାହାଜ ବୁଡ଼ି ଯାଏ
ନିଷ୍ଠୁର ଅତଳ 'ପାଣିରେ ।
ମଗର ଓ ଶିଶୁମାରି
ମାତନ୍ତି ଭୋଜିରେ,
ତିମି ଓ ତିମିଙ୍ଗିଳ
ଜଗିଥାନ୍ତି ପାଖାପାଖି ପୁଣି ।

ଜାହାଜ ସେତେବେଳେ
କ୍ଷୀଣ କଣ୍ଠରେ କହେ
''ମୁଁ ଦିନେ ଥିଲି ଏକ
ଅହଙ୍କାରୀ ସାଧବ-ବୋଇତ,

ସ୍ୱଚ୍ଛନ୍ଦରେ ପାଣି କାଟି
ଯାଉଥିଲି ଆଗକୁ କେବଳ,
ପୃଥିବୀରେ ସ୍ଥଳ କାହିଁ
କାହିଁବା ଦ୍ୱୀପର ଆଶ୍ରୟ,
ଚାରିଆଡ଼େ ନିଷ୍ଠୁର ଅକୃତଜ୍ଞ
ଲବଣାକ୍ତ ଜଳ,
ମୋର ପୁଞ୍ଜୀଭୂତ ହାହାକାର,
ବ୍ୟକ୍ତିଗତ ଗୁପ୍ତକଥା କହିବି କାହାକୁ,
ଶୁଣିବାକୁ କେହି ତ ନାହାନ୍ତି,
ଏହାଠାରୁ ବୁଡ଼ି ଯିବା ଭଲ ।"



# ହସ-କାନ୍ଦ

ଆଗେ ତୁମେ ହସୁଥିଲ
ଖିଲି ଖିଲି ହୋଇ,
ତୁମେ ହସୁଥିଲ ଆଗେ
କୌଣସି କାରଣ
ନଥାଇ ଆଉ
ସେହି ହସ ସଂକ୍ରାମକ
ବ୍ୟାଧି ପରି ସଞ୍ଚରି
ଯାଉଥିଲା ଅନ୍ୟ ସବୁ
ଓଠରେ ଓଠରେ ।
ଆଜି କିନ୍ତୁ ତୁମ ହସ
ଓଦା ଦିଆସିଲି,
ଫସ୍ କରି ଜଳି ଉଠି
ପୁଣି ଲିଭିଯାଏ
ଉଜ୍ଜ୍ୱଳି ପାରେ ନାହିଁ
ସମଗ୍ର ମୁଖ ମଣ୍ଡଳକୁ ।

କିଛି ଧୂପ ପୋଡ଼ି ପୋଡ଼ି
ପାଁଉଶ ହୋଇଯାଏ,
କିଛି ଚିହ୍ନ ପୋଛି ଯାଏ
ଇତିହାସ ପୃଷ୍ଠା ମାନଙ୍କରୁ ।
ନିଃଶବ୍ଦରେ ତୁମେ ହଜିଗଲ
କିଛି ହେଲେ ଚିହ୍ନ
ନ ରଖି ।

ତୁମେ କଣ ଜାଣିଅଛ
କିପରି କାନ୍ଦି ହୁଏ ବୋଲି,
ତୁମେ କଣ ଦେଖିଅଛ
ସ୍ୱପ୍ନ କେଭେ
ବିରଳ ମ୍ଳାନ ଜୋଛନାରେ ?

ଏ କାନ୍ଦରେ ଆଖିରୁ
ଝରେ ନାହିଁ ଲୁହ
ଶର-ବିଦ୍ଧ ହରିଣୀ ପରି ହୃଦୟଟା
କାନ୍ଦୁଥାଏ ଖାଲି ।
ଅସତର୍କ ମୁହୂର୍ତ୍ତରେ
ବାଣ ଆସି ବାଜିଛି
ଛାତିରେ,
ରକ୍ତ କିଛି ପଡି ରହେ
ଜଙ୍ଗଲର ଘାସରେ ଘାସରେ
ଏ କଥା କିନ୍ତୁ ତୁମେ
ଜାଣ ନାହିଁ ।

■■■

# ଘା

ତୁମ ଘରର ପାଚିରୀ
ଅସରନ୍ତି ବୃତ୍ତରେ ବୁଲି ବୁଲି
ଗଳି, ଉପଗଳି ଦେଇ ଚାଲିଛି ଆଗେଇ,
ସେ କଣ ସରିବନି' କେଭେ
ଦିଶିବନି' ଘରର କବାଟ ?

ଢାବାରେ ବସିଛି ଗୋଟେ ପ୍ଲେଟ
କଶା ମାଂସ ଧରି,
ଚୋବାଉଛି ପରମ ତୃପ୍ତିରେ ।
ହଠାତ୍ ପଶି ଆସିଲା
ତୁମ ଓଠ ପ୍ଲେଟ ଭିତରକୁ,
ମୁଁ ଦିନେ ଚୋବାଇଥିଲି ତାକୁ,
ସେତେବେଳେ ମୁଁ କଣ ଏକ
ନରଖାଦକ ଥିଲି ?

ଶୀତ ଆସି ଅପେକ୍ଷା
କରିଛି ବାରଣ୍ଡାରେ,
ତୁମେ ସିଲେଇ-କଳ ଉପରେ
ନଇଁ ପଡ଼ି ମୋ ଲାଗି
ଗରମ ପଞ୍ଜାବୀ ସିଲେଇ କରୁଛ ।
ସବୁ ଅଭିଆଡ଼ୀ ଝିଅମାନେ
ବସିଛନ୍ତି ଗୋଲ୍ ହୋଇ
ତୁମ ଚାରିପଟେ ଉଷୁମ ସାନ୍ନିଧରେ,
ଉଲ ଧରି ସୋଏଟର ବୁଣିବାକୁ,
ସେମାନେ କାହାକୁ ଦେବେ
ଏ ସୋଏଟର ?

ରାତି ଗୋଟାଏ ସ୍ୱୈରିଣୀ,
ତା ଦେହର ଆକାଶରେ
ଫୁଟି ଉଠୁଛି ଉପଦଂଶର କ୍ଷତ
ତାରା ହୋଇ ଗୋଟି ଗୋଟି କରି ।
ଜଟିଳ ଜିଜ୍ଞାସା ସବୁ ଆସ୍ତେ ଆସ୍ତେ
ଖୋଲି ହୋଇ ଯାଉଛି ଅନବରତ,
ସେମାନେ ପରିଣତ ହେଉଛନ୍ତି ସରଳ ରେଖାରେ ।

ସବୁ ସେତୁ ପାରି ହୋଇ
ହେବ ଏଥର,
କେହି ଆଉ ଆତ୍ମହତ୍ୟା କରିବାକୁ
ଛାତକୁ ଯିବେ ନାହିଁ ।
ସେମାନଙ୍କ ହୃଦୟର ଘା ପାଇଁ
ପାଇଛନ୍ତି ଆଶ୍ଚର୍ଯ୍ୟ ମଲମ,
ଅବିଲମ୍ବେ ଶୁଖି ଯିବ ଘା,
ଚିହ୍ନ ରହିବନି ।



# ଟାପୁ

ନଈ ଆର ପାରିରେ ଅଛି
ଆଉ ଏକ ନଈ,
ଏ ନଈକୁ କେହି ଦେଖି ନାହିଁ ।
ସେଠି ଆକାଶରୁ ଅବିରତ
ଝରୁଛି କୁହୁଡ଼ି, ଆଉ
ଘୋଟି ଅଛି ମ୍ଳାନ ମାଘ ମାସ
ଜାଡ଼ ସହ
ସବୁ ଦିନ ପାଇଁ ।
ବହୁତ ରହସ୍ୟ ଅଛି ଏ କୁହୁଡ଼ିରେ,
ନଈରେ ବି ରହସ୍ୟ- ଲହଡ଼ି,
ମୋତେ ଟାଣେ ତା ପାଖକୁ
ସବୁ ବେଳେ,
କାରଣ ମୁଁ ଅବଶ୍ୟ ଜାଣେନି ।

ଏଠି କେହି ଦେଖି ନାହିଁ
ସୂର୍ଯ୍ୟର ମୁହଁ,
ଛାଇମାନେ ଶୋଇଥାନ୍ତି
ପରସ୍ପର କୁଣ୍ଢାକୁଣ୍ଢି ହୋଇ
ଆଲିଙ୍ଗନରେ ।

ବନ୍ଧରେ ବିରାଟ ଘାଇ
ଯେ କୌଣସି ମୁହୂର୍ତ୍ତରେ
ଆଖପାଖ ଗାଁ ଭାସିଯିବ,
ନିଜସ୍ୱ ସଂବାଦଦାତା ମେଘମାନେ
କିଛି କିଛି ଖବର ଶୁଣାନ୍ତି,

କିନ୍ତୁ ଏ ଖବର ଯଥେଷ୍ଟ ନୁହେଁ,
ଏଥିରେ ମନ ଭରେ ନାହିଁ ।
ମୁଁ ଏକ ଯାଯାବର,
ମୋର କିଛି ଘର-ଦ୍ୱାର ନାହିଁ,
ଅଥବା ଅନ୍ୟ ଏକ ନଈର ଠିକଣା
ମୋତେ ଜଣା ନାହିଁ ।
ଏସବୁ ଲେଖା ଥାଏ ଛିଣ୍ଡା ମେଘ
ଦେହରେ କେବଳ
କିନ୍ତୁ ତାହା ପଢି ହୁଏ ନାହିଁ ।
ଏ ନଈରେ ଡଙ୍ଗା ଭାସେ ନାହିଁ,
ଭାସୁ ଭାସୁ ବୁଡି ଯାଏ
ପାଣି ଭଉଁରୀରେ ।
ଚାରି ଆଡ଼େ ବହମାନ
ପ୍ରବଳ ବିଷାକ୍ତ ସ୍ରୋତ,
କୁହୁଡ଼ିରେ ଢଙ୍କା ଥାଏ
ତାରାର ତିମିର ।
ଅତଡ଼ା ଖସିବା ଶବ୍ଦ
ରହି ରହି ଶୁଭୁଥାଏ ଖାଲି ।
ଏ ନଈରେ ବର୍ଷ ସାରା
ଲାଗିଥାଏ ବଢ଼ି,
ଆକାଶରେ ଉଡ଼େ ନାହିଁ
କାଉ ବା ବାଦୁଡ଼ି ।
ଆହୁରି ଦୁଷ୍ପ୍ରାପ୍ୟ ଏଠି
ଗେଣ୍ଡାଳିଆ, ବଗ କିମ୍ବା ଚିଲ,
କୋଇଲିର ଗୀତ ଏଠି
କେହି ଶୁଣି ନାହିଁ ।
ନିଷ୍ପତ୍ର ଗଛରେ ଗଛରେ

ବସିଥାନ୍ତି ଶାଗୁଣା କେବଳ
କ୍ଷୁର ଅପେକ୍ଷାରେ ।

ବିଷାଦ-ବେଷ୍ଟିତ ନଦୀ
ରିକ୍ତ ଉପତ୍ୟକା,
ଏଠି ଆଉ ବଞ୍ଚି ହେବ ନାହିଁ
ଏଠି କଣ ନାହିଁ କିଛି
ଟାପୁର ଆଶ୍ରୟ
ଯେଉଁଠି ଦଣ୍ଡେ ହେଲେ
ବିଶ୍ରାମ କରିବି ?



# ଆରୋହୀ- ୨

ଆରୋହୀ ଚାଲିଛି ଆଗେଇ
ଦିଗନ୍ତ ଆଡ଼କୁ ।
ବେଳ ଛାଇ-ଲେଉଟାଣି,
ଗୋଧୂଳିର ରକ୍ତ-ନଦୀ
ପାରି ହୋଇ ସେ
କ୍ରମଶଃ ପଶି ଯାଉଛି
ଦିଗନ୍ତର ଅଭ୍ୟନ୍ତରକୁ ।
ଘୋଡ଼ାର ଟାପୁ ଶବ୍ଦ
ମିଳାଇ ଯାଉଛି ଦୂରରେ ।

ମୁଁ ବେଳେ ବେଳେ ନିଜକୁ
ଭାବିଛି ସେହି ଅଶ୍ୱାରୋହୀ
ବୋଲି ।
ଘୋଡ଼ା ମୋର ସ୍ପର୍ଶ କରିଛି
ସମଗ୍ର ପରିଧି,
ଜୀବନର ସବୁ ବୃତ୍ତ
ପରିକ୍ରମା କରି
ସେ ଫେରି ଆସିଛି
ଦିଗନ୍ତରେ ନେଶି ହୋଇ
ଯାଇଥିବା ଗୋଧୂଳି ପାଖକୁ
ଅଣ୍ଡାଳି ଅଣ୍ଡାଳି ବାଟ
ଥକା ମାରି ମାରି
ଗୋଧୂଳିର ମ୍ଳାନ ଆଲୁଅରେ,
ସେ ଚାଲିଛି ଲକ୍ଷ୍ୟରେ ଆଗେଇ ।

ସେ ଆସିଛି ଟପି କେତେ
ଦଗ୍ଧ ଅପନ୍ତରା,
କେଉଁଠି କେଭେ ହେଲେ
ଫୁଟେ ନାହିଁ ଫୁଲ,
ଚାରିଆଡ଼େ ନିଃସ୍ୱ ନିଁଆ-ଝୁଲ,
ସେ ହୋଇଛି ପାରି
ଅସରନ୍ତି ମରୁଭୂମି
ଯେଉଁଠାରେ ରିକ୍ତ ବାଲି ଖାଲି ।
ଭର୍ତ୍ସନାର ବାଲି-ଝଡ଼ ଓଟ ପରି
ସହିଛି ପ୍ରଚୁର,
ବାଲିରେ ମୁଣ୍ଡ ପୋତି ଦେଇ ।
ସାୟାହ୍ନର ଅସ୍ତରାଗ
ବିଛାଡ଼ି ପଡ଼ିଛି,
ଆକାଶରେ ଗୋଧୂଳିର ଆହା,
ନିଜକୁ ସେ ପ୍ରସ୍ତୁତ କରିଛି
ସହିବାକୁ ବିଦ୍ୱେଷର ଝାଞ୍ଜି
ପୁଣି ଥରେ ।

କଥା ଥିଲା ଦେଖା ହେବ ବୋଲି
ଦିଗନ୍ତ ପାଖରେ,
ଯେଉଁଠି ଦିଗନ୍ତ ଓ ଗୋଧୂଳି
ପରସ୍ପର ହାତ ଧରାଧରି ।
ଆରୋହୀ ଚାଲିଛି ଆଗେଇ,
ଘୋଡ଼ା ତାର ଆଉ ଥମିବନି,
ଶିରସ୍ତ୍ରାଣ ରହି ରହି
ଝଲସୁଛି କେବଳ ।



# ଘର-ବାହୁଡ଼ା

ମୁଁ ଏଥର ଘରକୁ ଫେରୁଛି,
ମୁଠାଏ ପ୍ରେମ ପାଇଁ
ମୋର ଏ ବାହୁଡ଼ା ।
କିଞ୍ଚିତ ଆଲିଙ୍ଗନ ଆଉ
କ୍ରମଶଃ ବେଷ୍ଟନ କରୁଥିବା
ବାହୁ ରଖିବାକୁ ପ୍ରଶସ୍ତ ପିଠି
ପ୍ରୟୋଜନ ମୋର ।

ମୋ ଛାତି ଛୁଁଇ ଥାଉ
ସ୍ତନର ଚୂଡାକୁ ତୁମର,
ଆଶ୍ଳେଷରେ ଧରା ଦେଉ
ଅଜସ୍ର ଚୁମ୍ବନ ଗୋଟି ଗୋଟି କରି ।

ଘରକୁ ଫେରୁଛି ଏଥର ।
ଛୁଇଁ ଛୁଇଁ ଅନ୍ଧ-ଗଳି
ଅସଂଖ୍ୟ ଜଟିଳ ପଥ
ପରିକ୍ରମା କରି,
ମୁଁ କିନ୍ତୁ ରୋମାଞ୍ଚିତ
ଅଳସ ସଂଧ୍ୟାରେ ଆଜି
ବାରମ୍ବାର ।

ନିବିଡ଼ ଆଖିରେ ଜମୁ
କଳା-କୃଷ୍ଣ ମେଘ ଘୋଟି ଆସୁ,
ଆଉ ଧରା ପଡୁ ଶ୍ୱେତ-ଶୁଭ୍ର
ବଳାକାର ଧାଡ଼ି ସେଥିରେ ।
ଧୋଇ ଯାଉ ସମସ୍ତ ନିଦାଘ
ଧାରା ଶ୍ରାବଣରେ ।

ଆବେଗରେ ଥରି ଉଠୁ
ଦେହର ସମଗ୍ର ଦ୍ରାଘିମା,
ବୃନ୍ତ-ଚ୍ୟୁତ ଫୁଲ ପରି
ଦେହ ତୁମ ଭୂଇଁରେ ଲୋଟୁଥାଉ ।

ସବୁ ଅଦୃଶ୍ୟ ପାଚିରୀ
ଭାଙ୍ଗି ପଡୁ ଏଥର,
ତରଳ ଅନ୍ଧାର ଅପସରି ଯାଉ
ଚୂଡାନ୍ତ ଭାବରେ,
ବରଣ୍ଡାରେ ଜହ୍ନ ଜୋଛନାର
ମୁରୁଜ ପକାଉଛି,
ମୁଁ ଠିକ ସାଁଉଟି ନେବି
ତୁମ ଦେହ ସନ୍ତର୍ପଣରେ ।
ଅନନ୍ତ ତୃଷ୍ଣା ମୋର ମେଣ୍ଟିଯିବ
ମୁନ୍ଦାଏ ଭଲ ପାଇବାରେ ଏଥର ।

■■■

# ଗ୍ରହାନ୍ତର

ପୃଥିବୀଟା ବଡ ନିଃସଙ୍ଗ
ଲାଗୁଛି ଆଜିକାଲି,
ଥମି ଯାଇଛି ଶିଶୁଙ୍କ କାକଳୀ ପୁରାପୁରି,
ପରିଚିତ ମୁହଁ ସବୁ ଲୁଚିଛନ୍ତି
ବିସ୍ମୃତିର ପାଁଉଶ ଗଦାରେ ।
ବଡ ବେଶି ଚୁପ୍ ଚାପ୍ ଚାରିଆଡ଼,
ସନ୍ଧ୍ୟାରେ ବହୁତ କାକର,
କ୍ଲାନ୍ତି ଓ ପ୍ରଚୁର କୁହୁଡ଼ି ।
ଦୃଷ୍ଟି ଆଚ୍ଛନ୍ନ ହୋଇ ଯାଏ,
ଚିହ୍ନି ହୁଏ ନାହିଁ ଜମା
ଦୁଇ-ହାତ ଦୂରର ମଣିଷ,
ସନ୍ଧ୍ୟା ବଡ଼ ମାରାତ୍ମକ,
ସନ୍ଧ୍ୟାରେ ବହୁତ କୁହେଳି,
ଆଉ ଅସୀମ ଛଳନା
ସନ୍ଧ୍ୟାରେ ।

ହେ ଇଶ୍ୱର ରୋକି ଦିଅ ପୃଥିବୀର
ଆହ୍ନିକ ଗତି, କିଛିକ୍ଷଣ ପାଇଁ ।
ମୁଁ ଓହ୍ଲାଇ ଯାଏ ଏ ଗ୍ରହରୁ,
ଆଉ ଫେରିବିନି ।
ପୃଥିବୀଟା ଘୂରୁଛି ପ୍ରଚଣ୍ଡ ବେଗରେ,
ଭାରସାମ୍ୟ ରଖି ହେଉ ନାହିଁ,
ମୁହଁ ମାଡ଼ି ପଡିଯିବା ଡର
ସବୁବେଳେ,
ସଳଖି ଚାଲି ହେଉ ନାହିଁ ।

ଶୁଣିଛି ପ୍ରାଣ ଅଛି
ମଙ୍ଗଳ ଗ୍ରହରେ,
ଗଛ-ଲତା ବହୁତ ଶ୍ୟାମଳ,
ନନ୍ଦନ -କାନନ କିମ୍ବା ଇଡେନ- ଉଦ୍ୟାନ ଭଳି
ରମଣୀୟ ବଗିଚା ବି ଅଛି ଆଉ
'ଇଭ' ପରି ଅପାପବିଦ୍ଧ ପବିତ୍ର କିଶୋରୀ
ରାସ୍ତାରେ ସଦା ଭ୍ରାମ୍ୟମାଣ,
ଯିଏ ଖାଇ ନାହିଁ ନିଷିଦ୍ଧ ବୃକ୍ଷର ଫଳ
ଅଥବା ଭେଟି ନାହିଁ କୌଣସି ସଇତାନ,
ଯିଏ ତାକୁ 'ସାପ' ହୋଇ ଶିଖାଇବ
ଦେହକୁ ଗୋପନ କରିବାର
ଅସଂଖ୍ୟ ପଦ୍ଧତି ।
ଏଠି ଉତ୍କଣ୍ଠା ନାହିଁ ତିଳେ ହେଲେ ।
ଟେବୁଲରେ ଜମେ ନାହିଁ
ଅଲେଖା ଚିଠିର ବଣ୍ଡିଲ
ଗୋଟି ଗୋଟି କରି ।

ଏଠି ଈଶ୍ୱର ନାହାନ୍ତି କିମ୍ବା ଈଶ୍ୱର ବିଷୟକ
କୌଣସି ଜଟିଳ ପ୍ରସ୍ତାବ,
ଜଳ, ସ୍ଥଳ, ଅନ୍ତରୀକ୍ଷରେ
ବିଦ୍ୟମାନ ନୁହେଁ ।
ଏଠି ମନ୍ଦିର, ମସ୍‌ଜିଦ୍
କିଛି ହେଲେ ନାହିଁ ।
ପ୍ରେମ କଣ 'ଇଭ' ଜାଣେ ନାହିଁ
ସେ ଗୁନ୍ଥୁଛି ମାଳ ଏକ
ନିଜକୁ ପିନ୍ଧାଇବ ବୋଲି ।
ବଗିଚାରେ ଝଡ଼ ଆସେ ନାହିଁ
ଚାରିଆଡ଼େ ପଡ଼ି ରହେ

'ଇଭ'ର ଅମ୍ଲାନ କୈଶୋର
ଘାସର ଶେଯରେ ।
ଏଠି ଅଛି ଘୂମନ୍ତ ହେମନ୍ତ ଋତୁ,
ଯାହା ଅଟେ ଅତୀବ ନିର୍ଜନ,
ନିରୋଳା ପ୍ରଦୋଷରେ ଜହ୍ନ
ଆସି ଉଙ୍କି ମାରି ଯାଏ ।
ମଙ୍ଗଳ ଗ୍ରହର ଜହ୍ନ
ଅଲିଅଳ ଅତି ସୁକୁମାରୀ,
ଏବଂ ସେ ରହିଛି କୁମାରୀ ।



# ନିଦ-୨

କହି ପାର ମୃତ୍ୟୁ ଯାକୁ,
ଯଦିଓବା ସାମୟିକ ଏହା,
ସମ୍ପର୍କ ଛିନ୍ନ ହୁଏ
କିଛିବେଳ ପାଇଁ
ପୃଥିବୀ ସହିତ,
ସ୍ତବ୍ଧ ହୁଏ ସବୁ କୋଳାହଳ,
ମଣିଷ ପାଲଟି ଯାଏ ଜଡ଼ ।

ପ୍ରାତ୍ୟହିକ କାମରୁ ମିଳିଯାଏ
କିଞ୍ଚିତ୍ ନିଷ୍କୃତି,
ଗ୍ଲାନି ଓ ଅବସାଦ
ପାରେ ନାହିଁ କରିବାକୁ କାବୁ,
ଦୈନନ୍ଦିନ ଭୂଗୋଳରୁ ମୁକ୍ତ
ମନେ ହୁଏ ନିଜକୁ ହଠାତ୍ ।

ଏ କଣ ଚୋରାବାଲି
ଟାଣିନେବ, ବିସ୍ମୃତିର
ଅତଳ ଗର୍ଭକୁ ?
କେହି ନୁହେଁ କୁମ୍ଭକର୍ଣ୍ଣ,
ବର୍ଷ-ମାସ କେହି ଶୁଏ ନାହିଁ ।
ଏ ଅଟେ ଦୈନନ୍ଦିନ ଜଞ୍ଜାଳରୁ
ଅବ୍ୟାହତି କ୍ଷଣକର ଲାଗି,
ଯେତେବେଳେ ଦେହ ଆଉ
ପାରେ ନାହିଁ ବୋଝ ଟାଣିବାକୁ,
କ୍ଳାନ୍ତି ଆସି ପୋତି ଦିଏ
ବିଜୟ ପତାକା,

ପ୍ରାଣହୀନ ଦେହର ନିସ୍ପନ୍ଦ ସ୍ନାୟୁରେ ।
ମଞ୍ଚରୁ ଅପସୃୟମାନ
ସମସ୍ତ ନଟ-ନଟୀ
ଗୋଟି ଗୋଟି କରି ।
ସ୍ୱପ୍ନର ଦିଗନ୍ତରେ
ଉଡ଼ି ଆସେ ବିରଳ ବଳାକା
ଯଦିଓ ତା ତନ୍ଦ୍ରାରେ ଈଷତ୍ ଧୂସର ।



# ଶହେବର୍ଷର ନିସ୍ତବ୍ଧତା

ନିସ୍ତବ୍ଧତା ବହୁତ ପ୍ରାଚୀନ,
ବୟସ ହେବ ତାର ଶହେ ବର୍ଷ
ଅନ୍ୟୂନ ଭାବରେ ।
ଅନ୍ତରୀକ୍ଷକୁ ଅନାଇ ଠିଆ ହୁଏ
ରଚ୍ଚୁ ଏକ ନିସ୍ତବ୍ଧ ପୁରୁଷ,
ସେ ଦେଖୁଛି ଆଜି ଏକ
ମ୍ରିୟମାଣ ମଳିନ ଗୋଧୂଳି,
ଚାରିଆଡ଼େ ନୀରବତା
ପଡ଼ିଛି ବିଛାଡ଼ି ।
ନିସ୍ତବ୍ଧତା ବହୁତ ସରଳ,
ସେ ପାରି ନାହିଁ ସାଜି ଆଜି
ଅଳୀକ ସମୟ ପରି
କରୁଣ କ୍ଳାନ୍ତ ବିଦୂଷକ ।

ଛୁଞ୍ଚିଟିଏ ପଡ଼ିଲେବି ଭାଙ୍ଗିଯାଏ
ସବୁ ନିସ୍ତବ୍ଧତା ଖଣ୍ଡ ଖଣ୍ଡ ହୋଇ,
ଛୁଞ୍ଚି ପଡ଼ିବାର ଶବ୍ଦ
ବେଳେ ବେଳେ ବଡ ଭୟାନକ,
ବଡ ଅବିନାଶୀ ।
ବିଶ୍ୱସ୍ତ ଅନ୍ଧକାର ଭଲପାଏ
ନିସ୍ତବ୍ଧତାକୁ,
ଆଦରି ନିଏ ସବୁ ନୀରବତା
କୋମଳ ଭାବରେ,
ନିରାସକ୍ତ ଈଶ୍ୱରଙ୍କୁ ସେ କିନ୍ତୁ
ଡାକେ ନାହିଁ ସୂର୍ଯ୍ୟୋଦୟ ହେଲେ ।

ମୃତ୍ୟୁର ଅପର ନାମ
ନିସ୍ତବ୍ଧତା ନୁହେଁ,
ସାର୍ଥକ ସର୍ଜନା ପାଇଁ
ନିସ୍ତବ୍ଧତା, ନୀରବତା, ନିର୍ଜନତା
ଏକାନ୍ତ ପ୍ରୟୋଜନ ହୁଏ ।
ମୋ ନିଃସଙ୍ଗ ଜୀବନକୁ
ଶତାବ୍ଦୀ ପ୍ରାଚୀନ ଏହି ନିସ୍ତବ୍ଧତା
ସଙ୍ଗଦାନ କରେ ଆଉ
ଅନ୍ଧାରକୁ ଆହୁରି ବର୍ଣ୍ଣାଢ୍ୟ କରେ
ଶବ୍ଦଙ୍କର ଡେଣା କାଟି ଦେଇ ।



# ପାଣ୍ଡୁଲିପି

ମୁଁ ଭଲପାଏ ବୋଲି
କାହାରିକୁ କହିନାହିଁ,
କେଉଁଠି ହେଲେ ଦେଇ ନାହିଁ,
ଧାଡ଼ିଏ ବିଜ୍ଞାପନ, ଅଥବା
ରଙ୍ଗୀନ ପୋଷ୍ଟର
ଉଠି ନାହିଁ ଫୁଟି
ସହରର କାନ୍ଥ ମାନଙ୍କରେ ।
ମୋର ସବୁ ବ୍ୟକ୍ତିଗତ କଥା,
ଗୋପନୀୟ ବ୍ୟଥା ଓ ବେଦନା,
ମୁଁ କରିଛି ଲିପିବଦ୍ଧ
ମୋର ଏହି ପାଣ୍ଡୁଲିପିରେ ।
ସବୁ ସାନ-ବଡ ଦୁଃଖର
ତାଲିକା ଏ ପାଣ୍ଡୁଲିପି
ବହନ କରୁଛି ।
ପାଣ୍ଡୁଲିପି ରଖିଅଛି ଧରି
ଅତି ଯତ୍ନ କରି,
କାଳେ ମୁଁ ପାଶୋରି ଯିବି
ସମୟର ନିଷ୍ଠୁର ଜାଲରେ
ଧରାପଡ଼ି ଯାଇ ।

ଯେଉଁ ଓଠ କହିଥିଲା ଦିନେ
ଭଲ ପାଏ ଭଲପାଏ ବୋଲି,
ସେ ନୁହେଁ ପ୍ରବଞ୍ଚକ
ଜାଣେ ନାହିଁ ପ୍ରତାରଣା କରି,
ବେଦନାରେ ନୀଳ ସେ ଦିଶୁଛି
ଏବଂ ସେ ଈଷତ୍ ପାଣ୍ଡୁର ।

ପାଣ୍ଡୁଲିପି ପୃଷ୍ଠାରେ ରହିଛି
ଏ ଓଠର ବିଶଦ ବର୍ଣ୍ଣନା,
କାହିଁକି ସେ ନୀଳ ଦିଶେ,
କାହିଁକି ତାକୁ ଲାଗେ
ନିହତ ପାଖୁଡ଼ା ବୋଲି
ବେଳେ ବେଳେ ।

ପାଣ୍ଡୁଲିପି ଭୀଷଣ ଉତ୍ତପ୍ତ,
ଓଠର ଉଷ୍ଣତା ସବୁ
ହୋଇଅଛି ଠୁଳ ତାର
ଧାଡ଼ି ମାନଙ୍କରେ ।
ଓଠ ଦିନେ କହିଥିଲା,
ଭଲପାଏ— ଭଲପାଏ ବୋଲି,
ଉଡ୍ଡୀନ ପ୍ରେତ ପରି
ଆକାଶରେ ଭାସୁଥିବା ଜହ୍ନ
ଏହା ଶୁଣିଅଛି,
ସାକ୍ଷୀ ଦେଇ ପାରେ
ସେ ପ୍ରୟୋଜନ ହେଲେ ।
ପାଣ୍ଡୁଲିପି ଜାଣିଅଛି
ପ୍ରେମ ଏକ କ୍ରମିକ ଯନ୍ତ୍ରଣା
କମିଲେବି ପୁଣି ବଢିଯାଏ ।

ପ୍ରଚଣ୍ଡ ଉତ୍ତାପ ଅଛି
ପାଣ୍ଡୁ ଲିପି ପୃଷ୍ଠା ମାନଙ୍କରେ,
ଅସରନ୍ତି ଦୀର୍ଘଶ୍ୱାସ,
ଜାନୁର କୋମଳ ଯନ୍ତ୍ରଣା,
ସବୁ ଲେଖା ଅଛି ।
ପ୍ରେମର ଗତିପଥ ପିଚ୍ଛିଳ ଓ
ଅତ୍ୟନ୍ତ ଜଟିଳ,

ଏପଥ ଲମ୍ବିଛି
ଜହ୍ନ ଠାରୁ ଜଘନ ପର୍ଯ୍ୟନ୍ତ ।
ଚୂଡାନ୍ତ ଦହନ ପରେ
ଆଗ୍ନେୟ ଗିରିରେ ଲାଭାସ୍ରୋତର
ସ୍ଖଳନ
ପାଣ୍ଡୁଲିପି ଧରି ରଖିଅଛି ।

ଆଜି କିନ୍ତୁ ପାଣ୍ଡୁଲିପି
ଈଷତ୍ ଶୀତଳ,
ନିଃସୃତ ଲାଭାସ୍ରୋତ ପରିଣତ
ଗତିହୀନ ଧାତବ ଚଦ୍ଦରରେ ।
କିଛି କିଛି ଝରା ପତ୍ର
ଅଟକି ଯାଇଛି ଆସି
ପାଣ୍ଡୁଲିପି ପୃଷ୍ଠା ମାନଙ୍କରେ ।
ଅବଶ୍ୟ ତା କିଞ୍ଚିତ ଧୂସର ।

ମୁଁ ଏକ ମୃତ ଗିରି
ଯଦିଓ ଆଗ୍ନେୟ,
ଅଗ୍ନ୍ୟୁତ୍ପାତ ତୀବ୍ର ନୁହେଁ
ଘଟେ ନାହିଁ ତାହା ମୁହୁର୍ମୁହୁ,
ନିର୍ବାପିତ ବହ୍ନିର ବଳୟ,
ଶ୍ୱେତ-ଶୁଭ୍ର ମେଘ ପରି
ଜମିଅଛି ଚୂଡାରେ ଚୂଡାରେ ।



# ମନ ଭିତରେ

ପ୍ରତି ମଣିଷର ମନ ଭିତରେ
ଗୋଟାଏ ଭୂତକୋଠି ଅଛି,
ଯାହାର ପାଚିରୀ ଭାଙ୍ଗି ପଡ଼ିଛି ଝଡ଼ରେ
ଆଉ ବଗିଚା ଅରମାରେ ଭର୍ତ୍ତି ।
ତାର ଭଙ୍ଗା ଝର୍କା-କବାଟ
ହାତ ଠାରି ଡାକେ,
ନାଚ ଘରର ବୁଢ଼ିଆଣୀ ଜାଲ ଆଉ
ବିଶାଳ ଝାଡ଼-ବତୀର ରହସ୍ୟ
ପାଖକୁ ଘୋସାରେ କେବଳ,
ସେ ଘରର ଛିଣ୍ଡା ଗାଲିଚାରେ
ଘୁଙ୍ଗୁରର ଶବ୍ଦ ବାଜି ଉଠେ ଆଜିବି,
ଛୁନ୍-ଛୁନ୍-ଛୁନ୍ ।
ସେ ଭୂତକୋଠିରେ ମୁଁହ ମାଡ଼ି
ପଡ଼ି ରହେ ମୋ ଶୈଶବ
ଲମ୍ୱଜାଲ ହୋଇ ।

ପ୍ରତି ମଣିଷର ମନ ଭିତରେ
ତାର ପ୍ରିୟ ନାରୀର ଏକ ଶରୀର
ରହିଛି,
ସେ ନାରୀର ଦେହରେ ନଈ ପରି
ଅନେକ 'ଭଉଁରୀ,
ତା ଦେହରେ ଚୋରା-ସ୍ରୋତ

ରହି ଅଛି ଭରି,
ଆଉ କୂଳ-ଭଙ୍ଗା ପ୍ଲାବନର
ପ୍ରଚୁର ସଙ୍କେତ ।
ପ୍ରତି ମଣିଷର ମନରେ
ତାର ପ୍ରିୟ ଋତୁର ଆଭାସ ବର୍ତ୍ତମାନ,
ଏ ଋତୁର ଘନ-କୃଷ୍ଣ ଆକାଶରେ
ଉଡ୍ଡୀନ ଧଳା ବଗର ଧାଡ଼ି ।
ଯାହାକୁ ଦେଖିଲେ ସମଗ୍ର ବିରହ
ମିଳାଇ ଯାଏ ମୁହୂର୍ତ୍ତକେ ।
ଏ ଋତୁ ନାୟିକା ମାନଙ୍କୁ
କୂଳ ତ୍ୟାଗ କରିବାକୁ ଫୁସୁଲାଏ ।
ପ୍ରିୟା ଆସି ପହଞ୍ଚିଯାଏ ପାଖରେ,
ତା ଦେହ ଶିହରି ଉଠୁଛି
ବିଜୁଳି ଶିଖାର ମହୁର୍ମୁହୁ
ଆସ୍ଫାଳନରେ ।
ଅଳରା ବାଳରୁ ଝରି ପଡୁଛି
ବର୍ଷାର ପାଣି ଟୋପା ଟୋପା ହୋଇ ।
ସବୁ ମଣିଷର ମନର ନିଭୃତରେ
ରହିଛି କିଛି ରମଣୀୟ ସ୍ମୃତି,
ଯାହା ସେ ଧରି ରଖିବାକୁ ଚାହେଁ
ସୁନେଲୀ ଫ୍ରେମରେ ବନ୍ଧା ଛବି ପରି
ମନର କାନ୍ଥରେ ଝୁଲାଇ ।
ସବାରିରେ ବସିଛି କୁମ୍ ଅପା
ଶାଶୁ ଘର ଯିବ ବୋଲି,
ସେ କାନ୍ଦୁଛି କଇଁ କଇଁ ହୋଇ,

ଆଉ ଦେଖୁଛି ତାର ପ୍ରିୟ ଗାଁକୁ
ରହି ରହି ଓଢଣା ଫାଙ୍କରେ ।
ମୁଁ ଦୌଡୁଛି ସବାରି ସାଥିରେ,
ସେ ମୋ ହାତକୁ ଧରିଛି ଜାବୁଡ଼ି
ଜମ୍ମା ଛାଡୁ ନାହିଁ ।
ମୁଁ ସେତେବେଳେ ପିଲା ଥିଲି,
କିନ୍ତୁ ଏ ଛବି ରହିଗଲା ଅଲିଭା
ସ୍ମୃତିରେ ମୋର ସବୁଦିନ ପାଇଁ ।

■■■

# ଚିଠି

ମୁଁ ଚିଠି ଲେଖୁଛି ପ୍ରବାସରୁ
ତୁମ ପାଖେ ଏ ଚିଠି କେବେ
ପହଞ୍ଚିବ, କହି ପାରୁ ନାହିଁ।
ମୁଁ ଏ ଚିଠିରେ ଭରି ଦେଇଛି
କିଛି ଜଳପ୍ରପାତ, ଉଦାସୀ ମେଘ,
ଆଉ ଦେବଦାରୁ ଗଛର ଦୀର୍ଘଛାଇ,
ଏଠାର ଅତିକାୟ ପ୍ରଜାପତିଙ୍କୁ ଅବଶ୍ୟ
ବାଦ ଦେଇ ନାହିଁ।
ଅଜଣା ଫୁଲଙ୍କ ବାସ୍ନା ଚାହଁ ଯଦି,
ପଠାଇ ଦେଉଛି,
ଆକାଶରେ ଶଙ୍ଖଚିଲ ବୁଲୁଛି ବୃତ୍ତରେ।

ହଠାତ୍ ଅହେତୁକ ବର୍ଷା,
ମେଘ ଆସି ଦେହରେ ବାଜୁଛି,
ତୁମେ କହିବ ଏ ସବୁ ବାଜେ କଥା,
ବର୍ଷା କାହିଁ, ଓଡ଼ିଶାରେ କେବଳ ମରୁଡ଼ି।
ହେଉ ବର୍ଷା କଥା ବାଦ ଦେଲି,
ଚିଠିଟା ଓଦା ହୋଇଯିବ !

ବହୁ ଦିନୁଁ ଘର ମୁଁ ଛାଡ଼ିଛି,
ନିଛାଟିଆ ରାସ୍ତା ସବୁ ଲମ୍ବିଛନ୍ତି
ନିଦ୍ରିତ ଅଜଗର ଭଳି,
ଅର୍କିଡ୍ ଓ ଜିଳିଆ ଫୁଲଙ୍କ
ଭିଡ ପ୍ରତିଟି ବାଙ୍କରେ।
ଚେନାଏ ଖରା ଆସି ଲାଖିଛି

ପାହାଡ଼ ଚୂଡାରେ, ମା'ର ସ୍ନେହ ପରି ନରମ ।
ମ୍ୟାଗପାଇ ବଢ଼େଇର କର୍କଶ ଚିତ୍କାରକୁ
ଉପେକ୍ଷା କରି ମୁଁ ଆଗେଇ ଚାଲିଛି,
ପାଇନ୍ ଗଛରେ ଉଡନ୍ତା ଗୁଣ୍ଡୁଚି ଝୁଲୁଛି ।
ଗୁପ୍ତ ଆତତାୟୀ ଭଳି ହଠାତ୍ କୁହୁଡ଼ି
ଆସି ଠିଆ ହେଲା ବାଟ ଓଗାଳି,
ମୁଁ ଏଥର ଘରକୁ ଫେରିବି,
ତୁମେ ନିଶ୍ଚେ ଫୁଲଦାନୀରେ
କିଛି ରଜନୀଗନ୍ଧା ସଜାଇ ରଖିବ
ମୋ ପାଇଁ
ଆଉ ମୋର ପ୍ରିୟ ଭଦଭଦଳିଆକୁ
ଖବର ଦେବ,
ସେ ଆସି ବସିଥିବ
ଛାତ-କାର୍ନିସରେ ମୋ ଲାଗି
ଅପେକ୍ଷା କରି ।



# ବାଘ

କାଲି ସାରା ରାତି ମୁଁ
ଗୋଟାଏ ବାଘ ପିଠିରେ ଶୋଇଛି,
ମୁଁ ଶୋଇଛି ଚିତ୍ ହୋଇ,
ମୋ ହାତ-ଗୋଡ଼ କାଠ
ହୋଇ ଯାଇଛି ଭୟରେ ।
ମୁଁ ଟିକିଏ ହଲ-ଚଲ ସୁଦ୍ଧା
ହୋଇ ପାରୁନି,
ମୁଁ ପାଲଟି ଯାଇଛି
ମୂର୍ଦ୍ଧାର ପରି ଜଡ଼ ।

ଯଦି ମୁଁ ଭାରସାମ୍ୟ ହରାଇ
ତଳେ ପଡ଼ିଯାଏ ?
ତେବେ ବାଘ ମୋତେ
ନିଶ୍ଚେ ଗିଳି ଦେବ କିମ୍ବା
ଜିଭ ଚାଟି ଚାଟି
ମୋତେ ଚୋବାଇବ
ଅଳ୍ପ ଅଳ୍ପ କରି
ପରମ ତୃପ୍ତିରେ ।

ଏହା କିଛି ସ୍ୱପ୍ନ ନୁହେଁ,
ଅନ୍ତତଃ ରଙ୍ଗୀନ ନୁହେଁ ମୂଳରୁ ।
ରଙ୍ଗୀନ ହୋଇଥିଲେ ବାଘ ଦେହର
କଳା ପଟା ପଟା ଦାଗ
ଅନେକ ଉଜ୍ଜ୍ୱଳ ଦିଶନ୍ତା
ଜଙ୍ଗଲର ଗଛ-ଲଟା ଆହୁରି
ଶାଗୁଆ ଏବଂ

ଜୋଛନା ବହୁତ ମାୟାବୀ ।
ଏପରିକି ଆକାଶରୁ ଝରୁଥିବା
କାକର ସୁଦ୍ଧା ଗୋଟାଏ
ଅବୟବ ପାଆନ୍ତା !
ତେଣୁ ଏହା ରଙ୍ଗୀନ
ସ୍ୱପ୍ନ ନୁହେଁ ଜହ୍ନା ।

ତାପରେ ସେହି ଅଦ୍ଭୁତ
ଘଟଣାଟା ଘଟିଲା,
ମୋର ମଶାରିଟା
ସାଧବ ବୋଇତର ଅଝାଳ ପରି
ମୌସୁମୀ ପବନରେ ଫୁଲି ଉଠି
ଚାରି କୋଣର ଦଉଡ଼ି ଛିଣ୍ଡାଇ
ଉଡ଼ି ଯିବାକୁ ଲାଗିଲା
ଜହ୍ନ ଉଦ୍ଦେଶ୍ୟରେ ।
ମଶାରି ହରାଇ ମୋତେ
ବଡ଼ ଅସହାୟ ଲାଗିଲା ନିଜକୁ ।

ବାଘର କର୍କଶ ଲାଙ୍ଗୁଡ଼ଟା
ବେଳେ ବେଳେ ସ୍ପର୍ଶ କରୁଛି
ମୋ ମୁହଁକୁ,
ଭୟଙ୍କର ସୁଲୁସୁଲୁ ଲାଗୁଛି
ମୋତେ,
କିନ୍ତୁ ଆତଙ୍କରେ କିଛି ଶବ୍ଦ
କରି ପାରୁ ନାହିଁ !
ବାଘଟା ଦୌଡୁ ନାହିଁ ମୋଟେ,
ନିସ୍ପନ୍ଦ ହୋଇ ପଡି- ରହିଛି
ଗୋଟାଏ ଭଙ୍ଗୀରେ ।

ବଣର ବାଘକୁ ମୁଁ ଡରେ ନାହିଁ,
ଡରେ ମନର ବାଘକୁ,
ସେ ନଖ ବସାଇ ଦେଇଛି ଆମୂଳ
ମୋ ହୃଦୟରେ,
ସେଥିରୁ ଟୋପା ଟୋପା
ରକ୍ତ ଝରୁଛି ଆଜିବି, ଆଉ
ମୁଁ ଶୋଇ ରହିଛି ଗୋଟା
ବାଘ-ଅଙ୍କା ଚଦର ଉପରେ
ଖଟରେ, ଲମ୍ବଜାଲ ହୋଇ ।

■■■

# ଯିବି ନାହିଁ

ମୁଁ ଆଉ ଯିବି ନାହିଁ
ନଈ ପାଖକୁ,
କାହିଁକି ବା ଯିବି,
ସେ ମୋତେ କଣ ଦେବ ଆଉ,
କିଛି ଢେଉ, କିଛି
ଚଞ୍ଚଳ ତାରଲ୍ୟ,
କିଛି ପ୍ରମତ୍ତ ଭଉଁରୀ,
କିଛି ଚୋରା-ସ୍ରୋତ ?
ନଈ କିନ୍ତୁ ବହୁଛି ସେମିତି ।

ସେ କଣ ପାରିବ ଦେଇ
ମୋର ପ୍ରେମିକାର ପ୍ରାଣ ଫେରାଇ ?
କିଛି ଓଦା ଆଖିପତା,
କିଛି ଅସ୍ଥିର ହାତର ପାପୁଲି,
ଯେଉଁଥିରୁ ଅନବରତ ଝରି ପଡୁଛି
ଶ୍ୱେତ-ଶୁଭ୍ର ବାଲି
ଅଙ୍ଗୁଳି ଫାଙ୍କରୁ,
ସମୟବି ଝରି ଗଲା
ଠିକ ସେହି ପରି,
ନଈ ତାର ହିସାବ ରଖିଛି ?

ଏ ନଦୀ ଭସାଇ ନେଲା
ମୋର ମୁଗ୍ଧ କୈଶୋରକୁ ଆଉ
ସମଗ୍ର ଆହତ ଯୌବନ
ଭାସିଗଲା ପ୍ରବଳ ସ୍ରୋତରେ ।
ମୁଁ ଆଉ ଯିବି ନାହିଁ

ନଈପଠା ପାଖେ,
ଶୁଖି ଯାଉ କାଶତଣ୍ଡୀ ଫୁଲ,
କ୍ରମଶଃ ମିଳାଇ ଯାଉ
ସମସ୍ତ କୁହୁଡ଼ି,
ନଈପଠା ପଡିଥାଉ ସେମିତି ସେମିତି ।

ମୁଁ ଏକ ନିହତ ତରୁ
ନିଷ୍ପତ୍ର ହୋଇଅଛି ଠିଆ
ଦିଗନ୍ତ ବିଦାରି,
ମୋ ଦେହରେ ଶୀତ ନାହିଁ,
ମୋ ଦେହରେ ଉତ୍ତାପ ବି ନାହିଁ,
ସବୁ ଚେର ଯାଇଛି ହୁଗୁଳି ।

ନଈ ପାଣି ଶୁଖିଗଲା,
ଉଡ଼ିଗଲେ ସମସ୍ତ ସାରସ
ଅବେଳରେ ଗୋଟି ଗୋଟି କରି ।



# ଦେହ-ନଈ

ମୁଁ ଥରକୁ ଥର ଆସିଛି
ନଈ ପାଖକୁ, ତୁମ ପାଖକୁ,
ତୁମକୁ ପାଇବି ବୋଲି ।
କିନ୍ତୁ ଭାସି ଯାଇଛି
ତୁମର ମୁଁହ ଅବିରଳ ସୁଅରେ ସୁଅରେ
ଖଣ୍ଡ ଖଣ୍ଡ ହୋଇ
କେବେ ହେଲେ ଧରା ଦେଇ ନାହିଁ ।

ତୁମର ବିସ୍ରସ୍ତ ବାଳ,
ଜଳର ଭଁଉରୀ,
ଆବର୍ତ୍ତରେ ଘୁରୁଛି କେବଳ ।
ଭାସି ଯାଉଛି ତୁମର ପଣତ
ଫୁଙ୍ଗୁଳା କରି ଦେଇ
ଦେହକୁ ତୁମର ।

ମୁଁ ବୁଡ଼ିଛି ତୁମର ଦେହରେ,
ମୋତେ ଗ୍ରାସ କରିଛି
ତୁମ ଦେହର ମାଦକ ଘ୍ରାଣ,
ଦେହ-ସ୍ରୋତର ପ୍ରତିଟି ହାବୁକା ।
ତୁମ ସ୍ନାୟୁ, ମେଦ-ମଜ୍ଜା
ନିଃଶ୍ୱାସ ଏବଂ ଉତପ୍ତ ଶୋଣିତ
ମୋତେ ତିନ୍ତାଇ ଦେଇଛି ।

ନଈରେ ଅତଡ଼ା ଖସୁଛି ଏଥର,
ମୁଁ ମୋ ଛାତିରେ ଅନୁଭବ
କରୁଛି ସେହି ଶବ୍ଦ ।
ସେ ଧ୍ୱନି ବ୍ୟାପି ଯାଉଛି
ଉସରୁ ମୁଁହାଣ ପର୍ଯ୍ୟନ୍ତ ।
ମୁଁ ଝାସ ଦେଇଛି ତୁମ ଦେହରେ
ଦୂରରେ ଖସୁଛି ଅତଡ଼ା
ରହି ରହି ।



# ଗେଣ୍ଡାଳିଆ ହେମନ୍ତ ଆଡ଼କୁ

ଚୁମ୍ବନର ଆଗରୁ ଅଥବା
ଈଷତ୍ ପରେ ଠିକ୍ ମନେ ନାହିଁ,
ଦେଖିଥିଲି ତୁମ ଆଖିରେ
ସନ୍ତ୍ରାସ ।
ତୁମେ ଥରୁଥିଲ ଅଳ୍ପ ଅଳ୍ପ
କରି ସେଦିନ ।
କ୍ରମେ ତୁମ ହାତର ପାପୁଲି
ଗୋଲ ହୋଇ ମୁଠା ହୋଇଗଲା,
ଆଉ ତୁମେ ଜାବୁଡ଼ି ଧରିଥିଲ
ମୋ ହାତକୁ ।

ତ୍ରାସ ଥିଲା ଆଖିରେ ସେଦିନ,
ଡରୁଥିଲ କାହାକୁବା
ତୁମ ଛଡ଼ା କେହି ତ ନଥିଲେ ?
ବୁଝିଲି ଅନେକ ପରେ,
ଡରୁଥିଲ ନିଜକୁ କେବଳ ।

ମୋ କୈଶୋରର ବରଣ୍ଡାରେ
ତୁମେ ଆସି ହୋଇଥିଲ ଠିଆ,
ପିନ୍ଧିଥିଲ ନୀଳ ଶାଢୀ ଆଉ
ପ୍ରତୀକ୍ଷାରେ ଥିଲ କାହା ପାଇଁ, ଜାଣେନା ଜାଣେନା ।
ଯୌବନରେ ବଦଳିଲା ସେ ଶାଢ଼ୀର ରଙ୍ଗ
କିନ୍ତୁ ପ୍ରତୀକ୍ଷାଟା ରହିଗଲା
ଯେମିତି ସେମିତି ।

ବହୁବର୍ଷ ବିତିଗଲା, ଯୌବନବି ଅପସରି ଗଲା ।
ମୁଁ କିନ୍ତୁ ପ୍ରୌଢ଼ ଆଜି,
ଦିଗନ୍ତ ପାଖକୁ ଯାଏ
ପୁଣି ଫେରି ଆସେ,
ଆକାଶରେ ମଲା ଜହ୍ନ
ଜୀବନଟା ସେମିତି ସେମିତି ।
ଦିଗନ୍ତକୁ ଛୁଁଇ ହୁଏ ନାହିଁ
ମୁଁ ଛୁଁଇଛି ଏଥର ତୁମକୁ ।
ତୁମେ କଣ ଆଜିବି ଯୁବତୀ ?
କପାଳର ଲାଲି ଟିପା ସତେ କଣ
ଆଜିବି ଜଳୁଛି ?
ସରିଯାଉ ପ୍ରତୀକ୍ଷା ଏଥର
ଉଡ଼ିଯାନ୍ତୁ ଗେଣ୍ଡାଳିଆ
ହେମନ୍ତ ଆଡକୁ ।



# କି ହେବ ?

କିଏ କହେ ହୃଦୟକୁ
ଛାଳିବାକୁ ତିଳ ତିଳ କରି,
ନିଁଆରେ ହିଁ ମହମ ତରଳେ,
କିଏ ବା ଗୁନ୍ଥୁଛି ମାଳ
ନିପୁଣ ହାତରେ,
ମୋହମୟ ଶୂନ୍ୟତାକୁ
ପିନ୍ଧାଇବ ବୋଲି ?

କି ହେବ ହୃଦୟ ପୋଡ଼ିଲେ ?
ହୃଦୟତ ପୋଡ଼ିବା ପାଇଁକି,
ପଡ଼ି ରହେ ଧୂସର ପାଁଉଶ
ସ୍ମୃତିର ବିବର୍ଣ୍ଣ ଘାସରେ ।
ବ୍ୟର୍ଥ ହୁଏ ପୃଥିବୀର
ସବୁ ଦମକଳ,
ଏ ନିଁଆ ଲିଭେ ନାହିଁ କେଭେ ।

କି ଲାଭ ହୃଦୟରେ
ହୃଦୟ ଯୋଡ଼ିଲେ ?
ମରୁଭୂମି ଭରିଯାଏ ଅଚାନକ
ଫୁଲରେ ଫୁଲରେ,
ବାଜି ଉଠେ ହୃଦୟର ବୀଣା
ସ୍ୱର ସପ୍ତକରେ ।

ଶବ୍ଦ କିଛି ହୁଏ ନାହିଁ
ହୃଦୟ ଭାଙ୍ଗିଲେ,
ସେ କେବଳ ଜାଣିପାରେ
ଯାହାର ହୃଦୟ ଭାଙ୍ଗିଛି,

ନିଦ ଯାର ପଳାତକ
ଆଖିର ପତାରୁ,
କି ହେବ ନିଦାଘରେ
ବସନ୍ତ ଆସିଲେ ?
କିମ୍ବା କୋଇଲି ଡାକିଲେ ?
ମନ କିନ୍ତୁ ତିନ୍ତେ ନାହିଁ
ଯେତେ ବର୍ଷା ହେଲେ ।

ହୃଦୟକୁ ଖୋଳି ଖୋଳି
କି ଲାଭ ରକ୍ତ ବୁହାଇଲେ,
ବରଂ ପୋଡା-ଜଳା କମ
ହେବ ଚନ୍ଦନ ବୋଳିଲେ ।



# ଶୈଶବ-କୈଶୋର

କେହି ଫେରି ଆସେ ନାହିଁ
କେଭେ,
ନଈ କଣ ଫେରିଛିକି
ମୁହାଁଣରୁ ଉତ୍ସ ନିକଟକୁ ?
ଗଛର ଶୀର୍ଣ୍ଣ ଡେର
ପାଖକୁ କି ପୁଣି
କିଶଳୟ କଣ ଫେରି ଆସେ ?
ନୀଡ଼ ଛାଡ଼ି ଉଡି ଗଲେ ଥରେ
ଆସେ ନାହିଁ, ଫେରି
କେଭେ ଭୟାର୍ତ୍ତ ଚଢେଇ ।

ମୁଁ କାହିଁକି ଫେରିବିନି
ଶୈଶବ ପାଖକୁ,
ମୁଁ ଯଦି ଆଉଁସି ଦିଏ
କୈଶୋରର ପିଠି
ଅଗାଧ ସ୍ନେହରେ,
କିଏ ମୋତେ ବାଧା ଦେବ
କିଏ ମୋର ହାତକୁ ରୋକିବ ?
ମୁଁ ନିଶ୍ଚେ ଛଡ଼ାଇ ନେବି
ମୋ ହାତକୁ ତାର କବଳରୁ
ତାକୁ କିନ୍ତୁ ଅଳ୍ପ ହସି
କିଛି କହିବିନି ।

ନଈପଠା, କାଶତଣ୍ଡୀ ଫୁଲ,
ଲାଲିଗୁଡ଼ି, କଳିକତୀ ଲଟେଇରେ
ମାଞ୍ଜା ଦିଆ ଡୋର,

ମୋ ହାତକୁ ଛନ୍ଦି ରଖେ
ଦିଏ ନାହିଁ ସହଜରେ
ମୁକୁଳି ଯିବାକୁ ।
ଛାତିରେ ବାଜି ଉଠେ
ତୀବ୍ର ହୁଇସିଲ,
ନୀଳ ଟ୍ରେନ ପଶି ଆସେ
ଶୈଶବକୁ ଖିନଭିନ୍ କରି,
ଏ କେଉଁ ଅଜଣା ଷ୍ଟେଶନ ?
ଚାରିଆଡ଼େ ଅପନ୍ତରା,
ଭୂତକୋଠି ହାହାକାର କରେ ।
ମୋତେ ଡାକେ ପାଖକୁ ଯିବାକୁ
ରାତି ବେଶି ହେଲେ,
ତାର ଭଙ୍ଗା ଝର୍କା-କବାଟକୁ
ମୁଁ ଦେଖିଛି ଖୁବ ନିକଟରୁ ।
କୈଶୋରର ଚିଠି ଆସେ ନୀଳ ଲଫାପାରେ
କୁମ ଅପା ପାଖକୁ କେବଳ,
ଡାକବାଲା ଆଉ ତାର ଭଙ୍ଗା ସାଇକଲ,
ଘଣ୍ଟି ଯାର ବାଜେ
ନାହିଁ କେଭେ,
ସବୁ କଥା ମନେ ଅଛି
ଭୁଲି କଣ ହୁଏ ସହଜରେ ?
ମୁଁ କାହିଁକି ଫେରି ଆସେ
ମ୍ଳାନ ଗୋଧୂଳିରେ
ଦାମ୍ଭିକ ବନସ୍ପତି ପାଖେ ?
କାନି-ଫଟା ଗୁଡ଼ି ପରି
ମୋର ପିଲାବେଳ ଲଟକିଛି
ତାହାରି ଡାଳରେ ।

ଶରତ, ହେମନ୍ତ, ଶୀତ,
ବର୍ଷା ବା କାହିଁକି
ଫେରି ଫେରି ଆସନ୍ତି
ପୃଥିବୀକୁ ?
ମୁଁ ଆସିବି ଠିକ ସେହିପରି
ଟ୍ୟୁସନ ସାରି,
ଚପଲ ଘୋସାରି ଘୋସାରି ।
ଆକାଶରେ ଅତିକାୟ ଜହ୍ନ ଏକ
ମୋର ସାଥୀ ହେବ,
ମୁଁ ଆସିବି ଫେରି ମୋର
ଶୈଶବ ପାଖକୁ, ଅଶରୀରୀ ପରି ।
ଦେଖିବି କୁମ ଅପା ନିଷ୍ପାପ ମୁହଁକୁ
ବିଭୋର ମାୟାବୀ ସ୍ୱପ୍ନରେ ।



# କବିତା-ଆସରରେ ଜହ୍ନ

ଆଉ ମୋର କାମ
ନାହିଁ କିଛି,
ମୁଁ ଆଉ ଯିବି ନାହିଁ
ଦିଗନ୍ତ ପାଖକୁ,
ଛାଇମାନେ ଫେରି ଯାନ୍ତୁ
ଅପେକ୍ଷା ନକରି ।
ସନ୍ଧ୍ୟା ହେଲାଣି,
କେହି ଜଣେ ଗୁରେଇ ରଖିଛି
ଖରାର ଚଟେଇ,
ଆଜି ପାଇଁ ।

କଡ଼ା-ଇସ୍ତ୍ରୀ ପଞ୍ଜାବୀରେ
ଜହ୍ନ ଏକ ସୁବିନ୍ୟସ୍ତ
ଚକ୍ ଚକ୍ ଅଜଣା ଯୁବକ,
ସେ ଉଠି ଆସୁଛି
କ୍ରମଶଃ ଦିଗନ୍ତ ମଝିକୁ ।
ସେ ଆସୁଛି ଆମ
କବିତା ଆସରରେ
ଯୋଗ ଦେବ ବୋଲି ।
ସେ କିନ୍ତୁ ନିର୍ବାକ
ପଢ଼ିଲାନି ଗୋଟେ ବି କବିତା ।
ମାତ୍ର ତାର ଉପସ୍ଥିତି
ମୂର୍ତ୍ତିମନ୍ତ କବିତା ହୋଇଗଲା ।
ଆସରକୁ ମତାଇ ଦେଲା ପୁରାପୁରି ।

ମୋ ଘରର ଚଉକି ସବୁ
ଦାନ୍ତ ନେଫେଡ଼ି ଆଉଜି
ପଡ଼ିଛନ୍ତି ଏଣେ ତେଣେ ।
କାନ୍ଥ ଯାକ ଫୁଟି ଉଠିଛି ଧଳା
ଛଉର ସୁସ୍ପଷ୍ଟ ଦାଗ,
ଜହ୍ନକୁ ମୁଁ କେଉଁଠି ବସାଇବି ?
ମୋ ଘରଟା ବହୁଦିନୁଁ
ଖିଅର ହୋଇନି
ଦାନ୍ତ ସୁଦ୍ଧା ଘସି ନାହିଁ
କେଭେ
ଗାଧୋଇବା ତ ସ୍ୱପ୍ନର ବାହାରେ ।
ଭାବୁଛି ଛାତକୁ ନେବି
ଜହ୍ନକୁ ଏଥର,
ସେ ଯଦି ଫେରି ନ ଯାଏ
ସଅଳ ସଅଳ ।
ଲଣ୍ଡା ଛାତ, ବାଡ଼ ସୁଦ୍ଧା ନାହିଁ,
ଜହ୍ନ ଯଦି ଅକସ୍ମାତ୍
ଗଡ଼ି ପଡ଼େ ତଳ ଗାଡ଼ିଆକୁ ?

ମୋ ଆଖିରେ ନିଦ ନାହିଁ,
କବିତା ପଢ଼ିବି ବୋଲି
ବିନିଦ୍ର ଘୋର ଉତ୍କଣ୍ଠାରେ ।
ନିଛାଟିଆ ଝାଉଁ ବଣ ପରି
ମୁଁ ବି କବିତା ଶୁଣୁଛି
ପବନର ମର୍ମ୍ମର ଧ୍ୱନିରେ ।
'ଖଟରେ ଶୋଇ ଶୋଇ
ଜାବୁଡ଼ି ଧରିଛି ମୋର
ପାଣ୍ଡୁଲିପି ଅତି ସୋହାଗରେ ।

ମୋର ଆଜି କେହି ନାହିଁ
ଏହି ପୃଥିବୀରେ,
କବିତା ଖାତାର ପୃଷ୍ଠାରେ ପୃଷ୍ଠାରେ
ଫୁଟି ଉଠେ ଦାନ୍ତ ଓ ନଖର
ସୁସ୍ପଷ୍ଟ ସ୍ୱାକ୍ଷର ।
ଯେଉଁମାନେ ହୃଦୟରୁ
ରକ୍ତ ବୁହାଇଲେ
ଖୋଳି ଖୋଳି ଛାତିକୁ ମୋ
ତୀକ୍ଷ୍ଣ ଛୁରିକାରେ,
ଲେଖା ଅଛି ସେମାନଙ୍କ ନାମ,
ଆଉ ମୁଁ କରେ ପ୍ରଣାମ
ସେମାନଙ୍କୁ, ଆର୍ତ୍ତନାଦ ଶୁଣି
ମୋର ଦୌଡ଼ି ଆସିଥିଲେ
ମୋ ପାଖକୁ ଯେଉଁମାନେ ଦିନେ ।

ପିତାର ଉକ୍ରଣ୍ଠା ଆଉ
ମାତାର ଉଷ୍ଣ ଅଶ୍ରୁଧାରା
ଶୁଖି ଯାଇଛି ବହୁତ ଦିନରୁ ।
କବିତା ଖାତାର ପୃଷ୍ଠା ସବୁ
ମୁଁହ ମାଡ଼ି ଖୋଲା ପଡିଛନ୍ତି
ମୋ ଛାତି ଉପରେ ଆଉ
ହାହାକାର କରି ଉଠୁଛି
ମୋର ଗୁଳିବିଦ୍ଧ ହୃତ୍‌ପିଣ୍ଡ
ଅନ୍ଧାରରେ ।

■■■

# ଜାହାଜ ଆସୁଛି

ନକ୍ଷତ୍ର ମରିଯିବ ଦିନେ,
ଆଉ ତାର ଛାଇ
ପଡ଼ିବନି ପୃଥିବୀ ଉପରେ ।
ଆମେ ଆଉ ବୁଲିବୁନି
ହାତ ଧରାଧରି ହୋଇ
ନିର୍ଜନ ସମୁଦ୍ର ବେଳାରେ ।
କେତେ ଆଲୋକ ବର୍ଷ
କିଏ ତାର ହିସାବ କରିବ ?
କୋଟିଏ, ଦି କୋଟି କିମ୍ବା
ଆହୁରି ଅନେକ ଯୁଗାନ୍ତର ପରେ
ଆକାଶର ପ୍ରତ୍ୟନ୍ତ ସୀମାରେ
ନକ୍ଷତ୍ର ମରିଯିବ, ହାୟ !

ତୁମେ ବି ତରି ଯିବ ଦିନେ,
ରଜନୀଗନ୍ଧାର ମ୍ଳାନ ନିର୍ଜୀବ
ପାଖୁଡ଼ା ହୋଇ ସରିଯିବ ଦିନେ,
ଫୁଲଦାନୀ ଖାଲି ପଡ଼ିଥିବ,
ବାସି ଫୁଲ କେହି କଣ
ରଖିବ ସଜାଇ ?

ଆକାଶର ଗ୍ରୀବା ଧରି
ଉଠି ଆସେ ହେମନ୍ତର ଜହ୍ନ,
ପୃଥିବୀଟା ବିସ୍ତୀର୍ଣ୍ଣ ବିଷାଦରେ
ବୁଡ଼ି ରହେ,

ଭାରି ଫାଙ୍କା ଲାଗେ ଚାରିଆଡ଼,
ଶୂନ୍‌ଶାନ୍‌, ଚୁପ୍‌ଚାପ,
ନିହାତି ନିଃଶବ୍ଦ ।
ଚାରିଆଡ଼େ କଳା ରାତି
ବିଛାଡ଼ି ପଡ଼ିଛି କେବଳ ।
ମୁଁ ଶୋଇ ପାରିନି ଆଜି
ମୋତେ ବେଢ଼ି ରହିଛି
ଏକ ତୀବ୍ର ଅବସାଦ ।
ମୁଁ କ୍ରମଶଃ ଭାଙ୍ଗି ପଡ଼େ
ଖଣ୍ଡ ଖଣ୍ଡ ହୋଇ
ମିଶିବାକୁ ଧୂଳି ପରି
ଅଣୁରେ ଅଣୁରେ ।

ତୁମେ ନାହିଁ, ନକ୍ଷତ୍ର ବି ନାହିଁ,
ଭାଙ୍ଗି ପଡ଼େ ଯଶସ୍ୱୀ ତୋରଣ ସବୁ
ଗୋଟି ଗୋଟି ଗୋଟି କରି ।
କେହି ନାହିଁ କହିବାକୁ
ଯାଅ ନାହିଁ ବୋଲି
ବିପନ୍ନ ଅନ୍ଧାରରେ ବାଟ ଦିଶେ ନାହିଁ,
ଯିବିବା କୁଆଡେ ?
ମୁଁ ଗଲେବା କାହାର
କଣ ଯାଏ ଆସେ ?

ନଈ ନାହିଁ, ଗଛ ନାହିଁ
ନାହିଁ ଏଠି କିଛି ସବୁଜିମା,
ଫୁଲରେ ନାହିଁ ତିଳେ
ପରାଗର ରେଣୁ,
ବସନ୍ତ ପଳାତକ ଆଜି ।
ରିକ୍ତ ସୈକତ ପରି

ମୁଁ ଚାହିଁ ରହେ ଦିଗନ୍ତକୁ
କେତେବେଳେ ଆସିବ ସେ
ଅମୋଘ ଜାହାଜ,
ଦେଖା ଦେବ ରଜ୍ଜୁ ମାସ୍ତୁଲ
ମୋତେ ନେବ ବୋଲି ?

ସବୁ ଆଶା ପୂର୍ଣ୍ଣ ହୁଏ ନାହିଁ,
ନିହତ ସ୍ୱପ୍ନରେ ଦିଶେ
ଗୋଧୂଳିର ମୁହଁ, ଆପ୍ଲୁତ ରକ୍ତରେ ।

■■■

# ସେ ରାତି

ରାତି ମୁଁ ଅନେକ ଦେଖିଛି,
କିନ୍ତୁ ସେଦିନର ରାତି ଥିଲା
କିଛିଟା ବିଷାଦଗ୍ରସ୍ତ, ବିମର୍ଷ
ଏବଂ ନିହାତି ନିଷ୍ପ୍ରଭ
ବରଂ କ୍ଲାନ୍ତ ଓ ବିବର୍ଣ୍ଣ
ଦିଶୁଥିଲା । ପୁରାପୁରି ଶ୍ରୀହୀନ
କହି ହେବ ଏ ରାତିକୁ ।
ଏହି ସବୁ ରାତିରେ
କବିତା ମରିଯାଏ
ଚୂଡାନ୍ତ ଭାବରେ ।
କବି ଆଉ ଲେଖି
ପାରେ ନାହିଁ ।
କବିତାର ଧାଡି ସବୁ
ଶୃଙ୍ଖଳା ହରାଇ ବସନ୍ତି,
ପଶିଯାନ୍ତି ଏଣେତେଣେ
ସ୍ୱେଚ୍ଛାଚାରୀ ପରି,
ବୃନ୍ତଚ୍ୟୁତ ଫୁଲଭଳି
କବିତା ଧୂଳିରେ ଲୋଟୁଥାଏ ।
ଶବ୍ଦ ସବୁ ଗୁଳି-ବିଦ୍ଧ ଅତିଥି-ଚଢେଇ
ଉଡିଯାନ୍ତି ଦିଗନ୍ତ ଆଡକୁ
ଇତସ୍ତତଃ ।

ସେ ରାତି ଢାଙ୍କି ଦିଏ
ପୃଥିବୀ ପିଠିକୁ
ବାଦୁଡ଼ି ଡେଣାରେ ଆଉ
ଉପଦଂଶ କ୍ଷତ ପରି
ଜ୍ୱଳନ୍ତା ତାରାର ଚଦରରେ
ଘୋଡ଼ାଏ ମୁହଁକୁ, ପୃଥିବୀ ।

ମୃତ୍ୟୁର ନିରକ୍ତ ମୁହଁ
ମୁଁ ଦେଖିଛି ଏହିଭଳି
ରାତିରେ କେବଳ ।
ସେ ମୁହଁ ଘୋଡ଼ାଥାଏ ଫାଳେ,
ଦୀର୍ଘ ଜଳା କୁନ୍ତଳରେ, ଏବଂ
ଦୁଃଖ ପରି କିଛି ଗୋଟେ
ଝରି ପଡୁଥାଏ ଅପର ଫାଳରୁ
ବୁନ୍ଦା ବୁନ୍ଦା ଲୁହ ହୋଇ ।
ମୃତ୍ୟୁ ଆଜି କାନ୍ଦୁଛି କାହିଁକି,
ଜହ୍ନ କଣ ଦେଖା ଦେବ ନାହିଁ,
ଏ ରାତିଟା ଅନ୍ଧାର କେବଳ,
ଏ ସବୁ ରାତିରେ ଧାନର
ଶରୀରରେ ପୁଷ୍ଟିହୀନ ସ୍ନାୟୁର
ଦୌରାତ୍ମ୍ୟ, ଧାନ ଶୁଖିଯାଏ ।
ପାଳଭୂତ ଶୋଇପଡ଼େ
ନିଘୋଡ଼ ନିଦରେ ।
ଫୁଲ ସବୁ ଝରି ଝରି
ପଡ଼େ, ମ୍ଳାନ କୁହୁଡ଼ିରେ,
ଗୋଟି ଗୋଟି କରି ।

# ଆଖି

ଆଖି ମୁଁ ଅନେକ
ଦେଖିଛି ଜୀବନରେ,
ଏବଂ ଆଖିର କୋରକ
ଯାହା କ୍ରମେ ଉନ୍ମୀଳିତ ହୁଏ
ଖୁବ୍ ଧୀରେ ଧରେ ।
ଆଖି କେବେ ମିଛ କହେ ନାହିଁ
ଯାହା ପଛେ କହୁ ଓଠ,
ଆଖି କିନ୍ତୁ ସତ୍ୟରେ ଅଟଳ ।
ଆଖିର ଭାଷା ସବୁ
ପଢ଼ି ହୁଏ ଅତି ସହଜରେ ।
ସେ ମୋତେ ଛୁଁଇଥିଲା
ସୁଦୀର୍ଘ ତା ଆଖି- ପଲ୍ଲବରେ ।
ଚାରିଆଡ ଶୂନଶାନ୍,
ଥମିଗଲା ନିଃଶ୍ୱାସ ମୋ ମୁହୂର୍ତ୍ତକ ପାଇଁ ।
ଆଖିରେ ତା ନ ଥିଲା କଜଳ,
ମୋ ଆଡକୁ ଅପଲକ
ଚାହିଁ ରହିଥିଲା,
ଯେମିତି ସେ ମୋତେ ଚିହ୍ନେ
ଅନାଦି କାଳରୁ ।
ଥମି ଗଲା ଝାଁଉ ବଣ
ସମଗ୍ର ମର୍ମର,
ଢେଉ ସବୁ ତୁନି ପଡିଗଲେ,
ପୃଥିବୀରେ ଆମେ ଦୁହେଁ

ରହିଛୁ କେବଳ,
ଆଉ ସବୁ ଅକିଞ୍ଚନ,
ମଉଳା ନକ୍ଷତ୍ର ଭଳି ମ୍ଳାନ,
ଅକାଳ ଦୂରରେ ।

ତା ଆଖିରେ ନଥିଲା କଜ୍ଜଳ,
ନିରିମାଖି ଆଖିରେ ତା ହଠାତ୍ ଶ୍ରାବଣ,
ଆମେ ଦୁହେଁ ଭାସି ଗଲୁ
ଦିଗଭ୍ରଷ୍ଟ ହୋଇ
ପ୍ରବଳ ସ୍ରୋତରେ ।
କଟାକ୍ଷ ମୁଁ ସହି
ପାରେ ନାହିଁ,
ତିର୍ଯ୍ୟକ ଛୁରୀ ପରି
ବିଦ୍ଧ କରେ ସହସା ହୃଦୟ ।
ମୁଁ ଭଲ ପାଏ ଓଦା ଆଖିପତା,
କଜ୍ଜଳ ଧୋଇ ଯାଉ ପଛେ ।

■■■

# ଅନ୍ଧାର-ଆଲୁଅ

ଅନ୍ଧାର ଓହ୍ଲାଉଛି ଧୀରେ,
ସେ ଗିଳି ପକାଇଲା
ସରୁ ଗଳିଟାକୁ,
ଯେମିତି ଅଜଗର ଗିଳେ
ଛେଳି ଛୁଆ ସବୁକୁ ବଣରେ ।
ଏ ଅନ୍ଧାର ମୋ ଜୀବନର
ଶେଷ କଥା ନୁହେଁ,
ନିଶ୍ଚେ ଦିନେ ଏ ଅନ୍ଧାର
ଅପସରି ଯିବ ।

ତୁମ ଆଉ ମୋ ଭିତରେ
ବ୍ୟବଧାନ କ୍ରମଶଃ ବଢୁଛି ।
ଆମ ଦୁହିଁଙ୍କ ମଝିରେ
ପ୍ରଶସ୍ତ ପଡ଼ିଆ,
ପଡ଼ିଆରେ କେବଳ ଅନ୍ଧାର
କଂକ୍ରିଟ ପାଚିରି ପରି
ଠିଆ ହୋଇଛି ।
ଏ ଅନ୍ଧକାରର ଅବୟବ ଅଛି,
ହାତ ବଢାଇଲେ ଛୁଇଁ ହୁଏ ।
ପଡ଼ିଆରେ ଅନାବନା ଘାସ,
ଆଉ ଉଦ୍ଭିଦର ଜଟିଳ ଜ୍ୟାମିତି
ପାଦ ଛନ୍ଦି ଦିଏ ।

ମୋତେ କେହି ଲୋଡ଼ି
ନାହିଁ କେଭେ,
ମୋ ପାଇଁ କେହି
ପ୍ରତୀକ୍ଷାରେ ରହି ନାହିଁ

ଝର୍କା ପାଖରେ ।
ମୁଁ କଣ ମୁଠାଏ ଧୂଳି,
କିଛି ଆବର୍ଜନା,
ଘରର କୋଣରେ ପଡ଼ି ରହିବାକୁ ?
ମୁଁ କଣ ଝରାପତ୍ର
ଠିକଣା ବିହୀନ
ଉଡ଼ିଯିବା ଲାଗି ଖାଲି
ହେମନ୍ତ ଝଡ଼ରେ ?

ଅନ୍ଧାର ଥାଉ ଥାଉ
ତୁମେ ଆସ,
ଅନ୍ଧାର-ଆଲୁଅର ହୋରି ଖେଳ
ସରିବା ଆଗରୁ,
ଢାଙ୍ଗୁଲୁ ଢାଙ୍ଗୁଲୁ ପାହାନ୍ତାରେ
ଘାସରେ ପାଦ ଚିପି ଚିପି
ଆସ ତୁମେ,
ମୁଁ ଠିକ ପ୍ରତୀକ୍ଷାରେ ଥିବି ।
ଅନ୍ଧାରର ପିଚିକାରୀ ଧରିଛି
ରାତ୍ରି ଆଉ ପୂର୍ବ ଦିଗନ୍ତରେ
ପ୍ରଭାତ ଠିଆ ହୋଇଛି
ମୁଠାଏ ଅବୀର ନେଇ
ଫୋପାଡ଼ିବ ବୋଲି ।

ଦିନ ବଡ଼ ଲାଗଲା
ତିଳେ ହେଲେ ଆବରଣ ନାହିଁ,
ତୁମେ ଫେରିଯିବ ମୋ ପାଖରୁ
ଶେଷ ଅନ୍ଧାରରେ,
ସୂର୍ଯ୍ୟ ଉଠିବା ଆଗରୁ ।



# ଆସୁଛି କବିତା

କବିତା ଆସିଲେ
ସବୁ କିଛି ତୁଚ୍ଛ ହୋଇଯାଏ,
ଦମକଳ ଘଣ୍ଟି ପରି
ବାଜି ଉଠେ ତୀବ୍ର ସାଇରେନ୍ ।
ବାଟ ଛାଡ଼, ବାଟ ଛାଡ଼,
ପଡ଼ିଯାଏ ହୁରି
ଆଉ କିଛି ନୁହଁଇ ଜରୁରୀ,
କବିତା ଆସୁଛି ।

ବାଟ ଛାଡ଼ି ଠିଆ ହୁଏ
ସନ୍ତର୍ପଣରେ ଧୋବାଖାତା,
ପ୍ରାତ୍ୟହିକ ଦୁଧର ହିସାବ,
ପିଲାଙ୍କ ସ୍କୁଲ ବହି, ପରିବା-ଫର୍ଦ୍ଦ,
ଗୃହିଣୀଙ୍କ ଔଷଧ-ଚିଠା,
ରାସ୍ତାର ନଗଣ୍ୟ କଡ଼ରେ ।

ପାର୍ଥିବ ମହାର୍ଘ୍ୟ ପ୍ରେମ,
ମୁଗ୍ଧ କୋମଳତା,
ସୌନ୍ଦର୍ଯ୍ୟର ଅଳୀକ ବିସ୍ମୟ,
ଧୂସର ଗୋଲାପ ଭଳି
ମ୍ଳାନ ହୋଇଯାଏ ।
ମୁହୂର୍ତ୍ତ ମଧ୍ୟରେ ପାଶୋରେ
ମଣିଷ ସବୁ କିଛି
କବିତା ପାଇଁକି ।

କବିତାର ଘର ଅଛି
ସ୍ମୃତିର ଗୁମ୍ଫାରେ

ସେଠି ଭିଡ଼ ଛାଇ-ଆଲୁଅର ।
ଗୁମ୍ଫା-ମୁହଁ ଖୋଲା ଥିଲେ
ସ୍ମୃତି ସବୁ ପଦାକୁ ଆସନ୍ତି ।
ସ୍ମୃତିଙ୍କ କୁହୁଡ଼ି ଶରୀର,
ଦେଖୁ ଦେଖୁ ମିଳାନ୍ତି ସେମାନେ,
କେଉଁ ଆଡ଼େ କେହି ଜାଣେ ନାହିଁ ।
ଲାଲି ଗୁଡ଼ି ବିଭକ୍ତ ବେଲୁନ,
ଭଙ୍ଗା ପେଁକାଳୀ, ପଡ଼ିଥାଏ
ଗୁମ୍ଫାର ପ୍ରତ୍ୟନ୍ତ କୋଣରେ ।
ଟୋପାଏ ଅଶ୍ରୁବିନ୍ଦୁ, ଥରିଲା ହାତର
ପାପୁଲି, ଅବ୍ୟକ୍ତ ଓଠର ପାଖୁଡ଼ା,
ପୃଥିବୀର ସ୍ୱେଦ-ଗନ୍ଧ,
ବଞ୍ଚିବାର ସୁତୀବ୍ର ବାସନା,
ନିଦ୍ରାହୀନ କିଛି ରାତି,
ଇତିହାସ-ହୀନ
ସବୁ କିଛି ଜମା ଥାଏ
ଗୁମ୍ଫା କନ୍ଦରରେ ।
ଯାହା କେହି ପାଇ ନାହିଁ କେବେ,
କିମ୍ୱା ପାଇ ପୁଣି ହରାଇଛି ତାକୁ,
ଅଥବା ଯିଏ ପିଇଅଛି
ବ୍ୟର୍ଥତାର ତୀବ୍ର ହଳାହଳ,
ସେ ସବୁ ଅଭୁଲା କଥା,
ବିବର୍ଣ୍ଣ ସକାଳ ସବୁ,
ଟିପା ଥାଏ ସ୍ମୃତିର ଖାତାରେ ।
କବିତାର ହାତ-ଗୋଡ଼ ନାହିଁ,
ପୁରାପୁରି ଅବୟବ-ହୀନ,
କେତେବେଳେ ଆସିବ ସେ

କେହି ଜାଣେ ନାହିଁ ।
ତା ପାଟିରେ ବାଡ଼-ବତା ନାହିଁ,
କେହି କଣ ଜାଣିଛି କି
କଣ ସେ କହିବ ଏଥର ?
ଅଶରୀରୀ ସତ୍ତା ଏକ
କବିତା କେବଳ,
କବିକୁ ଆଧାର କରି
ପୃଥିବୀକୁ କବିତା ଓହ୍ଲାଏ,
କିଛି ଶୁଭ ନକ୍ଷତ୍ର ବେଳାରେ,
କବିତା ଏହା ଛଡ଼ା
ଆଉ କିଛି ନୁହେଁ ।

■■■

# ତୃତୀୟ ବୋତାମ

ତୃତୀୟ ନୟନ ପରି
ମନର ବି ଗୋଟାଏ ତୃତୀୟ
ଆଖି ଅଛି ।
ଯାହାକୁ ମୁଁ କହେ
ତୃତୀୟ ବୋତାମ ।
ଯାହା ଖୋଲି ଗଲେ ସବୁ
କୁହେଳିକା ମିଳାଇ ଯାଏ
ମୁହୂର୍ତ୍ତକ ଭିତରେ ।
ଇନ୍ଦ୍ରଧନୁର ସାତଟା ଯାକ
ରଙ୍ଗ ବାରି ହୋଇ ପଡେ
ସ୍ୱଷ୍ଟ ଭାବରେ ।

ଏହି ସବୁ ତୃତୀୟ ବୋତାମ
ଖୋଲିବା ସହଜ ନୁହେଁ,
ଖୋଲୁ ଖୋଲୁ ଅଟକି ଯାଏ
ଦିଗ୍‌ବିଜୟ ପ୍ରତ୍ୟନ୍ତ ସୀମାରେ,
ରକ୍ତିମ ସୂର୍ଯ୍ୟାସ୍ତ ପରି
କିଛି ବେଳ ପାଇଁ ।
ବେଳେ ବେଳେ ଜନ୍ମା
ଖୋଲି ହୁଏ ନାହିଁ
ଏ ବୋତାମ ।
ଖୋଲିବାକୁ ଚେଷ୍ଟା କରି
ଥକି ଯାଏ ହାତ,

ମନର କଣ ଡେଣା ଅଛି
ଉଡ଼ି ଯିବ ବୋତାମ ଛିଣ୍ଡାଇ
ଦେଖିବାକୁ ଜଳଜ ପ୍ରପାତ,
ଆକାଶରୁ ଅନ୍ୟ ଆକାଶକୁ ?
ମନ ଖୁବ୍ ହାଲୁକା ହୋଇଯାଏ
ବୋତାମଟା ଥରେ ଖୋଲିଗଲେ,
ଶୂନଶାନ୍ ଅପନ୍ତରା ଭରି ଯାଏ
ଶ୍ୟାମଳ ଘାସରେ
ମଲା ନଈ ପୁଣି ଜୀଇ ଉଠେ
ସେ କାହିଁକି କଲ୍ଲୋଳିନୀ
ସ୍ରୋତସ୍ୱତୀ ନ ହେବ
ପ୍ରଶ୍ନ କରେ ନିଜକୁ ସେ
ତୁହାଇ ତୁହାଇ ।

ଯଦି ଥରେ ଖୋଲିଯାଏ
ତୃତୀୟ ବୋତାମ,
ସ୍ୱପ୍ନ ସବୁ ଓହ୍ଲାଇବେ
ଆଖି ପଲ୍ଲବରେ,
ଦିଗନ୍ତ ଭରି ଯିବ ଦୁଧ ପରି
ଧଳା ଜୋଛନାରେ ।
ସାରା ରାତି ବାଜୁଥିବ
କେଉଁ ଏକ ଅଚିହ୍ନା ରାଗିଣୀ
ଯାହା ମୋତେ ପାଗଳ କରିବ ।
ମନର ଏ ସାର୍ବିକ ଉଡାଣ,
ଦୂରାଗତ ବଳାକା ପରି
ଉଡିଯିବ ଅକ୍ଳାନ୍ତ ଡେଣାରେ
ଆକାଶକୁ ଆନ୍ଦୋଳିତ କରି ।
ଅକ୍ଷାଂଶ, ଦ୍ରାଘିମା ଭଳି

ନିଶ୍ଚେତକ ସଙ୍କେତରେ
ବାନ୍ଧି ହୋଇ ରହିବନି, ଆଉ
ଉପତ୍ୟକା, ଅରଣ୍ୟର
ଶ୍ୟାମଳ ଗାରିମା, ସବୁ କିଛି
ଲଂଘି ଯିବ ମନ,
ଖୋଲି ଯାଏ ଥରେ ଯଦି
ତୃତୀୟ ବୋତାମ ।



# ବିସର୍ଜନ

ପ୍ରତିମା ବିସର୍ଜନ ପରେ
ରହିଯାଏ କିଛି ଦୀର୍ଘଶ୍ୱାସ,
ଅବସାଦ ହାହାକାର ଆଉ
ପ୍ରାତ୍ୟହିକ ଦୁଃଖକଷ୍ଟ କିଛି ।
ନାରୀମାନେ ଆଭରଣହୀନ
ହୋଇ ପଡ଼ନ୍ତି ହଠାତ୍,
ବେକରୁ ଓହ୍ଲାଇ ଦିଅନ୍ତି ଚନ୍ଦ୍ରହାର,
ଯାହା ଫେରି ଯାଏ ସ୍ୱକୀୟ ପେଡ଼ିକୁ
ଖୋଲି ରଖନ୍ତି ଖରସ୍ତ ପରସ୍ତ କରି
ପ୍ରିୟ ପାଟ-ପୀତାମ୍ବରୀ,
ସଜାଇ ରଖନ୍ତି ସେଗୁଡ଼ିକୁ
ଆଲମାରୀର ପ୍ରଶସ୍ତ ଥାକରେ ।
ପ୍ରତିମା ବିସର୍ଜନ ପରେ
ମାଇକର ସ୍ୱେଚ୍ଛାଚାରୀ ଗର୍ଜନ
ତୁନି ପଡିଯାଏ ।
ପେଣ୍ଡାଲ ସବୁ ନିରଙ୍କୁଶ ଅନ୍ଧାରରେ
ସହଳ ସହଳ ଶୋଇ ପଡ଼ନ୍ତି ।
ପାଣିରେ ବୁଡ଼ି ଯାଏ ପ୍ରତିମାର ମୁହଁ,
ହାତ-ଗୋଡ଼ ନଶ୍ୱର ଅନନ୍ୟ
ଭଙ୍ଗୀରେ ।
କ୍ରମଶଃ ଲୀନ ହୁଏ
ବାହୁ, କଟି, ସ୍ତନ, ଜଂଘ,
ଗୋଟି ଗୋଟି କରି ।

ପ୍ରତିମା ବିସର୍ଜନ ପରେ
ଆଉ କିଛି ରହେ ନାହିଁ
ବାକି,
ସବୁ କିଛି ଭାସି ଯାଏ
ନଈର ସୁଅରେ ।



# ମଙ୍ଗଳ ଗ୍ରହରୁ କହୁଛି

ପୃଥିବୀ ଛାଡ଼ି ଚାଲିଯିବା
ପରେ,
ମୁଁ ପୁରାପୁରି ନିଃସ୍ୱ
ହୋଇଗଲି ।
ବୁଲା ଭିକାରୁଣୀ ଠୁଁ ବି
ହୀନିମାନି
ଗୋବର-ଗୋଟେଇ ।

ହ୍ୟାଲୋ ପୃଥିବୀ, ହ୍ୟାଲୋ,
ମୁଁ ମଙ୍ଗଳ ଗ୍ରହରୁ କହୁଛି,
ମୋତେ ଜମ୍ମା ଭଲ ଲାଗୁନି
ଏଠି,
ମୁଁ ପୁଣି ତୁମର ସେହି
ଚିତ୍ରିତ ଦ୍ରାଘିମା ଭିତରକୁ
ଫେରି ଯିବାକୁ ଚାହେଁ,
ମୋତେ ଫେରି ଯିବାକୁ
କିଛି ସମୟ ଦିଅ ।
ପୃଥିବୀ ହ୍ୟାଲୋ, ହ୍ୟାଲୋ, ହ୍ୟାଲୋ,
ବ୍ଲିପ୍– ବ୍ଲିପ୍ – ବ୍ଲିପ୍ ।
ପୃଥିବୀ ନୀରବ ।

ଏଠାରେ ନାରୀମାନେ
ନିତାନ୍ତ ଯାନ୍ତ୍ରିକ ।
ମୋ ସ୍ୱପ୍ନ ଉପରେ ଉଚ୍ଚ-ହିଲ
ଜୋତା ମାଡ଼ି ଚାଲିବାକୁ
ଦ୍ୱିଧା କରନ୍ତି ।
ଅକ୍ଷାଂଶର ପାର୍ଥିବ ବୃତ୍ତ
ମୁଁ କିନ୍ତୁ ଭୁଲିନି,
ଆହ୍ନିକ ଗତି ସଙ୍ଗେ
ତାଳ ଦେଇ ସେମାନେ ବୁଲନ୍ତି ।

ଋତୁ ମାନେ ବନ୍ଧ୍ୟା ଏଠି,
ବାଜେ ନାହିଁ ଝଡ଼ର ଦୁନ୍ଦୁଭି, କିମ୍ବା
ଫଗୁଣରେ ଫୁଟେ ନାହିଁ
ଫୁଲ ।
ନିଁଆ ଝୁଲ ଆକାଶରୁ
ଖସେ ନାହିଁ କେଭେ
ନିଦାଘରେ ।
ଏଠି ଖାଲି ଲାଲି ଧୂଳି
ମାୟାବୀ ଗୋଧୂଳି
କେହି ଦେଖିନାହିଁ,
ଜଣା ନାହିଁ ଦିଗନ୍ତର ରଙ୍ଗ
କଣ ବୋଲି,
ଏଠି କେଭେ କଦମ୍ବ ଫୁଟିନି ।

ଯଦି କେଭେ ପ୍ରାବୃଟର
ନିବିଡ କବରୀ ଖୋଲି ଯାଏ,
ଆଉ ସେଥିରେ ଖୋସାଯାଏ
ବଳାକାର ଧାଡ଼ି,
ତେବେ ନିଶ୍ଚେ ମୋତେ
ଖବର ଦେବ, ହେ ପୃଥିବୀ,
ହେ ମହାପୃଥିବୀ ।
ହ୍ୟାଲୋ ପୃଥିବୀ, ହ୍ୟାଲୋ ।
ବ୍ଲିପ୍- ବ୍ଲିପ୍ – ବ୍ଲିପ୍ ।

■■■

# ଗୋଲାପର ଦୁଃଖ

ଗୋଲାପ ବିଷଣ୍ଣ ଆଜି,
ପ୍ରଜାପତି ଆଜିବି ଆସିନି,
କମ୍ପିତ ନୀଳ ଡେଣା
ସ୍ପନ୍ଦିତ ହୋଇ ନାହିଁ
ମୁହୂର୍ତ୍ତକ ପାଇଁ ।
ମେଘ ମାନେ ଛତା ପରି
ସୂର୍ଯ୍ୟକୁ ଆଢୁଆଳ କରି
ଭାସୁଛନ୍ତି ଆକାଶରେ
ଗୋଲାପ ମଉଳି ଯିବ
କାଳେ !

ଗୋଲାପକୁ ବିଷାଦ ଘାରିଛି,
ମ୍ଳାନ ଦିଶେ ମୁଁହ ତା'ର
ଦୀର୍ଘ ପ୍ରତୀକ୍ଷାରେ ।
ଉଦାସୀ ପବନ କଣ
ବାଟ ଭୁଲିଗଲା,
କାହିଁକି ସେ ଆଜି ଆସିଲାନି' ?
ଗୋଲାପର ମହକରେ ଟାଣି ହୋଇ
ଲମ୍ପଟ ଭ୍ରମର କେବଳ
ବୁଲି ବୁଲି ଆସେ ପୁଣି
ଗୋଲାପ ପାଖକୁ ବାରମ୍ବାର ।

ସକାଳୁ ବର୍ଷଣ ଆଜି
ମେଘ ଢ଼ାଳେ ତୁହା ତୁହା
ପାଣି,
ଗୋଲାପର ନରମ ଶରୀର,
କ୍ଷୟକାଶ ରୋଗୀ ପରି
ଧୀରେ ଧୀରେ କ୍ଷୟ ହୋଇଗଲା,
ଝରିଗଲା ସମସ୍ତ ପାଖୁଡା
ଗୋଟି ଗୋଟି କରି

ଗୋଲାପ ଅସୁସ୍ଥ ଆଜି
ଲୁଣ୍ଠିତ ସମଗ୍ର ସୁବାସ,
ବୀଭତ୍ସ ଦାନ୍ତର ଦାଗ
ପାଖୁଡ଼ାରେ
ଗୋଲାପ କଣ ଜାଣିଥିଲା
ଜନ୍ମ ତାର ଧର୍ଷିତା ହେବାକୁ ?

■■■

# ଦୃଶ୍ୟପଟ

ପତ୍ର ସବୁ ପାଚିଗଲା,
ହଳଦିଆ ହେଲା,
ଝରିବାର ଈଷତ୍ ପୂର୍ବରୁ
ଗଛର ତଳ ଦେଇ
ଚାଲିଯାଏ ପରାଜିତ ଧୂସର
ମଣିଷ, ଖୁବ ଧୀରେ ଧୀରେ
ଛିଣ୍ଡା ଚଟି ଘୋସାରି ଘୋସାରି
ସେ ଆଉ ଶୁଣିବନି ଡାକ
କୋଇଲିର ।

କ୍ଷତ-ମୁଖ ଖୋଲି ଯାଏ
ରକ୍ତ ଝରୁଥାଏ,
ମୁଠାଏ ପ୍ରେମ ପାଇଁ
ହାତ ପାତି ଠିଆ ହୁଏ
ଆଜନ୍ମ ଭିକାରୀ ମଣିଷ ।
ପ୍ରେମ ଲାଗି ଏତେ
ରକ୍ତପାତ ।
ଜୀବନ ସରିବା ପୂର୍ବରୁ
ଯତି ପଡିଯାଏ ଜୀବନରେ ।
କେହି ଜଣେ ଚାଲିଯାଏ
ସବୁ କିଛି ଛାଡି ଦେଇ
ପୃଥିବୀରୁ ସବୁଦିନ ପାଇଁ ।

ଜୀବନ -ଯୁଦ୍ଧର କ୍ଷତ
ଶୁଖେ ନାହିଁ ସହଜରେ
ରକ୍ତ ଝରିଯାଏ ।

ଆଜି ବଡ଼ ଅସମୟ,
ଜୋଛନା ନିଷ୍ପ୍ରଭ ଦିଶୁଛି,
ଜୋଛନାକୁ କୁହୁଡି ଘାରିଛି,
ମ୍ଳାନ ଦିଶେ ସବୁ ଉଜ୍ଜ୍ୱଳତା ।
ସମୁଦ୍ରର ଆସ୍ଫାଳନ ଝାଉଁବଣ
ଓଦା କରି ଦିଏ ।
ମଣିଷଟା ସମସ୍ତ ଦେଖୁଛି,
ସେ ଜାଣେ ଶିହରଣ
ଆଙ୍ଗୁଠିରେ ଆଙ୍ଗୁଠି ଛନ୍ଦିଲେ ।
ସେ ଜାଣେ ନିଷ୍ପାପ ଛାତି
ନିଦରେବି ଉଠେ ଆଉ ପଡେ ।
ସ୍ନାୟୁ ସବୁ ହୁଗୁଳି ଯାଏ
ଛୁଇଁଲେବି ହାଲୁକା ହାତରେ ।

ସେ ଶୁଣିଛି ବୃକ୍ଷଙ୍କ କୋଳାହଳ,
କେମିତି ସେ ମହୀରୂହ ହେବେ,
ବୃକ୍ଷଙ୍କ ସ୍ୱପ୍ନ ସରିଯାଏ
ଜହ୍ନ ବୁଡ଼ି ଗଲେ ।
ଶ୍ରାବଣ ସ୍ଥିର ଆଜି
ଗଛ ମାନଙ୍କରେ,
କେତେ ବେଳେ ଝରିବ ସେ
କେହି ଜାଣେ ନାହିଁ ।

ସେ ଦେଖିଛି ନିର୍ଜନତାର ରୂପ -
ଶ୍ୱେତ-ଶୁଭ୍ର ଆଭରଣହୀନ,
ସଦ୍ୟ ବିଧବା ଭଳି ଅତ୍ୟନ୍ତ କରୁଣ ।
ତା ଦେହରେ ହାତ ଦେଇ
ଠିଆ ହୁଏ ସିଏ,
ସେ ଆହୁରି ମୋହନୀୟ ଦିଶେ
ଖୋଲି ଦିଏ ଗୋପନ କବାଟ
ସବୁ ଅବଲୀଳାକ୍ରମେ ।

ସେ ଫେରୁଛି ଘରକୁ ଏଥର,
ଚାରିଆଡ଼ ଶୂନଶାନ, ସ୍ତବ୍ଧ ଚରାଚର
ଘରମାନେ ଶୋଇଛନ୍ତି ପ୍ରଗାଢ଼ ନିଦରେ,
ହଠାତ୍ ଭାସି ଆସେ ବାସ୍ନା ଅତରର,
ଏ ଘର ତ ତାର ନୁହେଁ
ଏ କେଉଁ ମାୟାବିନୀ ଘର
ନାଚର ତାଳେ ତାଳେ ବାଜୁଛି ନୂପୁର ?



# ଦେବଯାନୀ ଫେରିଆସ

ଜୀବନରେ ସ୍ୱପ୍ନ ଅଛି,
ସମ୍ପୂର୍ଣ୍ଣ ସ୍ୱପ୍ନ କିଛି
ରହିଥାଏ, ମଜବୁତ୍ ଡଉଲ ଡାଉଲ ।
ସ୍ୱପ୍ନ କିଛି ରହିବନି
ଏ କଣ ସମ୍ଭବ ?
ଧୀରେ ଧୀରେ ଗଢି ଉଠେ
ସ୍ୱପ୍ନର ମୀନାର ଉଚ୍ଚରୁ
ଆହୁରି ଉଚ୍ଚକୁ ।

ସୁଖ ଥିଲା, ଶାନ୍ତି ଥିଲା,
ଆଉ ଥିଲା ପ୍ରେମ,
ଅଜସ୍ର ନୀଳ କଇଁ
ପୋଖରୀରେ, ଆକାଶରେ ଜହ୍ନ ।
ମଳୟ ହିଲ୍ଲୋଳ ଥିଲା,
କଇଁ ସବୁ ହେଉଥିଲେ
କଥା ପରସ୍ପର, ଦେହଲି ଦୋହଲି ।
ଆଉ ଥିଲା ଗୋଲାପରେ କୀଟ
ସନ୍ଦେହର,
ଯାହା ଖାଉଥିଲା କୋରି କୋରି
ହୃଦୟକୁ କ୍ରମଶଃ କ୍ରମଶଃ ।

କାହିଁକି ଦେବଯାନୀ କଥା କହୁଥିଲା
ସେ ଯୁବକଟି ସଙ୍ଗେ ?
କାହିଁକି ତା ଯୁଗ୍ମ ବେଣୀ
ହେଉଥିଲା ଆନ୍ଦୋଳିତ ବାରମ୍ବାର
କଥା ସଙ୍ଗେ ତାଳ ରଖି ରଖି ?
ସେ କାହିଁକି ଆଙ୍ଗୁଳିରେ
କାଟୁଥିଲା ଗାର ?
ପ୍ରେମରେ କଣ କିଛି ସର୍ତ୍ତ ଥାଏ ?
ଦେବଯାନୀ ଜାଣେ ନାହିଁ କୌଣସି ସର୍ତ୍ତକୁ ।

ମୋ'ଡ଼ର ନିଅନ-ବତୀ ଜଳି ଉଠିଥିଲା,
ପବନରେ ଥିଲା ଅଭିସାର
କଣ ଅଛି ଲମ୍ବା-କଳି,
ସୁନେଲୀ ଚଶମାରେ,
ଦେବଯାନୀ କଣ ଜାଣେ ନାହିଁ ?

ଦେବଯାନୀ ଯାଅ ନାହିଁ
ତା ପାଖକୁ, କଥା କୁହ ନାହିଁ
ବୁଲି ବୁଲି ଅନାଅନି ତା ଆଡ଼କୁ
ଆଉ ବାରମ୍ବାର,
ଅନ୍ତତଃ ଫେରି ଆସ ଥରେ
ମୋ ପାଖକୁ ।

ଜୀବନ ଯାପନର ମାନେ
ବୁଝିବା ଆଗରୁ
ଜୀବନତ ପ୍ରାୟ ସରିଗଲା ।
ଏହା ପରେ ଅନନ୍ତ ମରଣ,
ପରସ୍ତ ପରସ୍ତ ହୋଇ
ସବିନ୍ୟସ୍ତ ବିଛଣା ଉପରେ ।



# ଦେବଯାନୀ ଫେରି ନାହିଁ

ଦେବଯାନୀ ଫେରି ଆସି ନାହିଁ,
ସୂର୍ଯ୍ୟର ମୁହଁ ଦିଶି ନାହିଁ,
ଆକାଶଟା ବେବାକ ମେଘୁଆ
ମୁଁ ଆଜି ଝର୍କା ଖୋଲି ନାହିଁ ।

ଦେବଯାନୀ ଭଲଥାଅ ତୁମେ,
ସନ୍ଧ୍ୟାଦୀପ ଜଳୁଥାଉ
ତୁମ ଚଉରାରେ,
ଶୁଭୁଥାଉ ଢିଙ୍କିର ପାହାର,
ତୁମ ପ୍ରିୟ ହଂସ ମାନେ
ଖେଳୁଥାନ୍ତୁ ତୁମ ପୋଖରୀରେ ।
ଚାଳରେ ଫଳିଥାଉ ଲାଉ
ଆଉ ଜହ୍ନ ଆସି ବସି ଥାଉ
ପିଣ୍ଡାରେ ତୁମର ଢାକିଢୁକି ହୋଇ ।

ମୁଁ ଏକ ଭଙ୍ଗା ଭୂତ କୋଠି,
ମୋତେ ଗ୍ରାସି ଯାଇଅଛି
ଅନାବନା ଘାସ, ଛାତରେ
ବର ଓ ଅଶ୍ୱତ୍ଥ ଓହଳ
ସେମାନେ ଉଦ୍ୟତ ବେଷ୍ଟନ
କରିବାକୁ ମୋତେ ।
ପବନ ବହୁଛି ହାହାକାର ପରି
ଚେମିଣି ଓ ଅଜସ୍ର ବାଦୁଡ଼ି
ଘର ମାନଙ୍କରେ ।
ମୁଁ ଏଥର ପଡିବି ଭୁଶୁଡ଼ି
ସଶବ୍ଦରେ ଅଚାନକ ।

ଜଣେ ଲୋକ କମିଯିବ
ପୃଥିବୀ ପୃଷ୍ଠରୁ,
ନିଃସଙ୍ଗ ପଦାତିକ ଜଣେ ଆଉ
ବୁଲିବନି' ରାସ୍ତାରେ ରାସ୍ତାରେ
ଚଟିକୁ ତା ଘୋସାରି ଘୋସାରି ।
କାହାରି କିଛି ଆଉ କ୍ଷତି
ହେବ ନାହିଁ,
ପୃଥିବୀର ଆହ୍ନିକ ଗତି
ଯଥାରୀତି ଚାଲୁ ରହିଥିବ ।
ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ-ତାରା
ଆତଯାତ ହେଉଥିବେ ନିତି,
ତିଳେ ମାତ୍ର ବ୍ୟତିକ୍ରମ ଘଟିବନି'
ଅନ୍ୟତ୍ର କେଉଁଠି ।
ପ୍ରାକୃଟର ଘନଘଟା, ତହିଁରେ ବିଜୁଳି ଛଟା,
ହେମନ୍ତର ନିଷ୍ପ୍ରଭ ଗୋଧୂଳି,
ନିଦାଘରେ କୃଷ୍ଣଚୂଡା ନିଁଆ,
ଆକାଶରୁ ଝଡ଼ର ଛଅାଣ କେମିତି ଓହ୍ଲାଏ
ଜଳଧି ଛାତିକୁ, ଦେଖିବାକୁ ମୁଁ
ଆଉ ନଥିବି,
ସବୁ କିନ୍ତୁ ଘଟୁଥିବ ସେମିତି  ସେମିତି ।

■■■

# ଦେବଯାନୀ କବିତା ଲେଖେନା

ଜୀବନର ସାୟାହ୍ନରେ ପ୍ରଦୋଷ ବେଳାରେ,
ଆଚ୍ଛନ୍ନ ତୃଣଭୂମି ହେମନ୍ତର ମ୍ଲାନ ଆଲୋକରେ,
ଛାଡ଼ିଥିବା ସାପ-କାତି, ଅଣ୍ଡାର ଖୋଳପା,
ଲାଗି ଅଛି ଏଠି ସେଠି
ନିବିଡ଼ ବେଦନା ପରି
ଧୂସର ଘାସରେ ।

କିଏ ଶୁଝେ ପୃଥିବୀର ଋଣ,
ଅନେକ ରହିଛି ବାକି,
ଆମ ଭଳି ନିର୍ବୋଧ ପ୍ରବୀଣ
ଉଠାନ୍ତି ସେ ସବୁ କଥା,
କିନ୍ତୁ ଶୁଝି ପାରନ୍ତିନି
କିଛି ହେଲେ କେଭେ ।
ଅନ୍ୟମାନେ ଭାବନ୍ତିନି କିଛି ।

ମୁଁ ଛୁଁଇଛି ପୃଥିବୀର ଛାତି,
ଜାଣିଛି ସେ ବଞ୍ଚିଅଛି,
ନିଃଶ୍ୱାସ-ପ୍ରଶ୍ୱାସ ତାର ଅତି ସାବଲୀଳ,
ପୃଥିବୀ ମରିବ ନାହିଁ କେଭେ ।

ପୃଥିବୀ ବଞ୍ଚି ଥାଉ ଅଜର ଅମର ହୋଇ
ବରଂ ଆମେ ସବୁ ମରି ଯିବୁ ଦିନେ ।
ଶୀତ ରାତି ମ୍ଳାନ ଜୋଛନାରେ
ଆମର ଦେହ ସବୁ
ପଡ଼ିଥିବ ନିର୍ଜୀବ ଅବ୍ୟର୍ଥ ଭଙ୍ଗୀରେ ।
ଆମର ସେ-ସବୁ ନିଦ
ଆଉ ଭାଙ୍ଗିବନି ।
ଛାଇମାନେ ଓହ୍ଲାଇବେ ଆକାଶରୁ
ଆମକୁ ବେଢ଼ି ଯିବେ ଗୋଲ ହୋଇ
ହାତ ଧରି ପରସ୍ପରର ।

ଦେବଯାନୀ ଭୁଲିଯିବ ମୋତେ
ଯେମିତି ସମୁଦ୍ର ଢେଉ
ଭୁଲିଯାଏ ପରିତ୍ୟକ୍ତ ରିକ୍ତ ବେଳାଭୂମି,
ଅଥବା ଜୀବିତ ଝାଉଁବଣକୁ
ଯାହାର ମର୍ମର ଧ୍ୱନି ଦୀର୍ଘଶ୍ୱାସ
ପରି ଶୁଭୁଥାଏ ।
ଦେବଯାନୀ କବିତା ଲେଖେନା,
ସେ ଭାବେ ଲେଖିବାଟା ଅତି ତୁଚ୍ଛକଥା,
ସେ କାହିଁକି ଲେଖିବ କବିତା ?
ସେ ବଞ୍ଚିଛି କବିତା ଲେଖା ହେବ ବୋଲି
ତାହାରି ଉପରେ ।

ଏଥର ମୁଁ ଚାଲିଯିବି ସବୁ ଛାଡ଼ି ଦେଇ,
କେବଳ ଗୋଟାଏ ଚୌକି
ଖାଲି ପଡ଼ିଥିବ
ମୋଡର ଚାହା ଦୋକାନରେ ।
ଆଉ ସବୁ ଠିକ ଠାକ୍,
ପାର୍ଥିବ ଅନ୍ୟ ସବୁ ଛାଇ
ଯଥାରୀତି ଯେ ଯାହା ସ୍ଥାନରେ ।



